ବ୍ରାହ୍ମଣକାରପକ୍ଷେ —

# ଯୁବତୀବିବାହ ଖଣ୍ଡନ





ସ୍ମାମୀପୃଥର୍ମା ଋଷିମାନଙ୍କ ସାହାଯ୍ୟରେ
ଲେଖକ ଶ୍ରୀ ଗୋପବନ୍ଧୁ ବିଦ୍ୟାଭୂଷଣ ଶର୍ମାଙ୍କ ଦ୍ୱାରା
ପ୍ରକାଶିତ ।

୵୫୦





ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭ-
ବତି ଭାରତ । ଅଭ୍ୟୁତ୍ଥାନ-
ଧର୍ମସ୍ୟ ତଦାତ୍ମାନଂ ସୃଜା-
ମ୍ୟହଂ ।

*Printed by* **L. C. Patnaik,**
**At the V. B. P. Works,**
**Parlakimedi.**

**1929.**

# ସମର୍ପଣଂ

ଅଶେଷଗୁଣ ମଣ୍ଡିତ, ବହୁଶାସ୍ତ୍ରପାରଙ୍ଗମ, ରାଜର୍ଷିପ୍ରତିମ, ଉଦାରହୃଦୟ, ସନାତନଧର୍ମପ୍ରାଣ, ଜାତୀୟସମୁନ୍ନତିବ୍ରତଦୀକ୍ଷିତ, ଯୁକ୍ତିତର୍କାଦିବହୁଗୁଣ ଉଦ୍ଧତାଳାପକଳା ଜଳାପପଣ୍ଟ ବୀର ଶ୍ରୀ ଶ୍ରୀ ଶ୍ରୀ ଶ୍ରୀ ଶ୍ରୀ ଶ୍ରୀ ଶ୍ରୀ ବିକ୍ରମଦେବ ବର୍ମା ମହାମହୋଦୟଙ୍କ କର-କମଳେଷୁ ।

ଅନୁଭୂତଶ୍ରଦ୍ଧାସହ ଏହି କ୍ଷୁଦ୍ରତମ ପୁସ୍ତିକାଖଣ୍ଡିକ ଅର୍ପଣ-କଲି । ଆଶାକରେ ସାଦରେ ଗୃହୀତହେବ ।

ଇତି,

ଲେଖକ-



# ବିଜ୍ଞପ୍ତି

ପାରଳାଖେମୁଣ୍ଡି ଇଂରେଜକଲେଜର ପଣ୍ଡିତ ଶ୍ରୀଯୁତ ମଲ୍ଲୟାଶାସ୍ତ୍ରୀ ମହାଶୟ ୧୯୨୮ ସାଲ ଡିସେମ୍ବର ମାସର ପ୍ରାୟ ପ୍ରଥମସପ୍ତାହରେ ଯୁବତୀବିବାହ ପ୍ରତିପାଦକ ପ୍ରବନ୍ଧଟିଏ ଦୈନିକଆଶାରେ ପ୍ରକାଶକରି ଉତ୍କଳକଲେଜର ପଣ୍ଡିତ ଶ୍ରୀଯୁତ ଗୋବିନ୍ଦ ଦାଶ ମହାଶୟଙ୍କଦ୍ୱାରା ସେପ୍ରବନ୍ଧର ସମାଲୋଚନା ବା ଖଣ୍ଡନଲାଗି ଆମ୍ଭଙ୍କୁ ଅନୁରୋଧ କରିଥିଲେ । ତାଙ୍କ ଅନୁରୋଧର ଗୁରୁତ୍ୱସଙ୍କ ବୁଝିପାରି ଅନିଚ୍ଛାସତ୍ତ୍ୱେ ସୁଦ୍ଧା ସେଥିର ଉତ୍ତର ଲେଖିବାରେ ପ୍ରବୃତ୍ତ ହେଲି । କିନ୍ତୁ "ଜଣେ ବିଶିଷ୍ଟ ପଣ୍ଡିତଙ୍କସହ ପ୍ରତିବାଦକରିବା 'ଅସଂଗତ" ମନେକରି ସେଥିର ଉତ୍ତର ସାକ୍ଷାତଭାବେ ନଲେଖି "ବିବାହ ବୟସ ନିରୂପଣ" ଶୀର୍ଷକତା ସହକାରେ ଲେଖିଥିଲି । ମୋର ସେପ୍ରବନ୍ଧ ସେହି ଡିସେମ୍ବର ତୃତୀୟ ସପ୍ତାହରେ ଦୈନିକଆଶାରେ ବାହାରିଥିଲା । ସେପ୍ରବନ୍ଧରେ ମୁଁ କାହାରିକୁ ବ୍ୟକ୍ତିଗତଭାବେ ଆକ୍ଷେପ ବା ଆକ୍ରମଣ କରିନଥିଲି । ତଥାପି ଶ୍ରୀଯୁତ ସାହିତ୍ୟ ଶିରୋମଣି ପଣ୍ଡିତ ଅନନ୍ତ ତ୍ରିପାଠୀ ମହାଶୟ ଉତ୍ତେଜିତ ଓ ପ୍ରୋତ୍ସାହିତଭାବେ ଆମ୍ଭର ସେହି ପ୍ରବନ୍ଧଟିକୁ ତନ୍ନତନ୍ନଭାବେ ଖଣ୍ଡନକରିବାକୁଯାଇ ୧୯୨୮ ସାଲ ଯାନୁୟାରୀମାସର ତା ୫, ୬, ୮, ୧୨, ୨୨, ୨୩, ୨୪ ରିଖର ଦୈନିକ ଆଶାପତ୍ର ଗୁଡ଼ିକରେ ଶ୍ରାବଣମେଘର ଘନଘନ ବାରିବୃଷ୍ଟିଗୁଡ଼ିକ ଯଥେଷ୍ଟଭାବେ ଅନେକ କଥା ଲେଖିଗଲେ । ତାଙ୍କର ସେହିଶାସ୍ତ୍ରୀୟ ସଂଗତ ସଂଦର୍ଭ ବିହୀନ ଲେଖା ଧୋରଣୀ ଦେଖି ମୁଁ ଅଳ୍ପ କେ ଦିନମଧ୍ୟରେ ସେଥିର ପ୍ରତିବାଦଲେଖି ଶ୍ରୀଯୁତ ମାନନୀୟ ଆପନ୍ନାପରୀକ୍ଷା ମହାଶୟଙ୍କଦ୍ୱାରା ଦୈନିକଆଶା ସମ୍ପାଦକମହୋଦୟଙ୍କଠାକୁ ପ୍ରକାଶାର୍ଥ ପ୍ରେରଣକଲି, କିନ୍ତୁ ପ୍ରକାଶିତହେଲାନାହିଁ । ସମ୍ପାଦକବାବୁ ଜଣେ ସମାଜନେତା ଓ ସୁପ୍ରସିଦ୍ଧ ଗଣ୍ୟମାନ୍ୟ । ତାହା ଉତ୍କଳରେ କାହାରି ଅବିଦିତନୁହେଁ । ସୁତରାଂ ସମ୍ପାଦକ ଉକ୍ତବାବୁ ଯେପକ୍ଷପାତଦୃଷ୍ଟିରେ ଆମ୍ଭର ପ୍ରବନ୍ଧ ପତ୍ରିକାସ୍ଥ କରିନଥିବେ ତାହା କଦାପି ବିଶ୍ୱସଯୋଗ୍ୟନୁହେଁ । କେଜାଣି କ'ଣ ଭାବି ସେ ମୋର ସେହି ପ୍ରବନ୍ଧଟିକୁ ନିଜପତ୍ରିକାରେ ଛପାଇବା ପରିବର୍ତ୍ତେ ପେଟିକାମଧ୍ୟେ ଛପାଇଦେଲେ । ଆଉ ମୁଁ ସେହିପ୍ରତିବାଦପ୍ରବନ୍ଧତାଙ୍କଠାକୁପଠାଇଥିବାସମ୍ବାଦ ସୁଦ୍ଧା ସେନିଜପତ୍ରିକାରେ ପ୍ରକାଶକଲେନାହିଁ । ପରେ କେତେଜଣ ବିଶିଷ୍ଟବ୍ୟକ୍ତିଙ୍କଦ୍ୱାରା ସୁଦ୍ଧା ପ୍ରବନ୍ଧପ୍ରକାଶା-

ଥ ସମ୍ପାଦକବାବୁଙ୍କ ବାରମ୍ବାର ଅନୁରୋଧକର ହତାଶହେଲି । ସୁତରାଂ ସେପ୍ରବନ୍ଧ ପୁସ୍ତିକାକାରରେ ପ୍ରକାଶାର୍ଥ ସଚେଷ୍ଟହେବାକୁ ବାଧ୍ୟହେଲି । ଏହିପୁସ୍ତିକାର ବିଷୟ ଯୁବତୀବିବାହ ଖଣ୍ଡନ ମାତ୍ର । ଏବିଷୟ ଯେ ଭାରତବର୍ଷରେ ମୁଁ କେବଳନୂତନଭାବରେ କହେ, ତା'ନୁହେଁ । ଜନସଂଖ୍ୟା ଦୃଷ୍ଟିରେ କେତେଜଣ ନବ୍ୟସଭ୍ୟଙ୍କୁ ବାଦ୍‌ଦେଲେ ସକଳଭାରତବାସିଙ୍କଦ୍ୱାରା ଏହା ଅନୁମୋଦିତହୋଇ ଅବହମାନକାଳରୁ ଏପର୍ଯ୍ୟନ୍ତ ଚାଲିଆସୁଅଛି । ଏବିଷୟ ସାନଠାରୁ ବଡପର୍ଯ୍ୟନ୍ତ ସର୍ବଙ୍କ ହୃଦ୍‌ଗତକରାଯାଇ ସୁସିଦ୍ଧାନ୍ତିତ ହୋଇଥିବାବିଷୟ କାହାରିକୁ ଅବିଦିତନୁହେଁ । ଭାରତବର୍ଷରେ ବିଶ୍ୱେଶ୍ୱରଙ୍କ ନିତ୍ୟଧାମ ଶ୍ରୀକାଶୀକ୍ଷେତ୍ରଯେ ବେଦରେ ପ୍ରଶଂସିତ, ତାହା କହିବା ବାହୁଲ୍ୟମାତ୍ର । ଉପରୋକ୍ତ ବିଷୟରବିଚାରନିମନ୍ତେ ସେଠାରେ ଯେଉଁବିରାଟ ସଭା ଅନୁଷ୍ଠିତହୋଇଥିଲା ତାହା ସର୍ବଜନ ବିଦିତ । ସେଥିପାଇଁ ସେଠାରେ ଭାରତବର୍ଷରପ୍ରାୟ ସକଳସ୍ଥାନରୁ ତ୍ରିକାଳଜ୍ଞ ଅତ୍ରିଅଙ୍ଗିରା ବଶିଷ୍ଠ ଓ ଗୌତମକଳ୍ପ ବେଦବେଦାଙ୍ଗ ପାରଗ ସତ୍କର୍ମାନୁଷ୍ଠାନ ପରାୟଣ ମହାମହା ପଣ୍ଡିତ ଜ୍ଞାନୀ ଓ ମତୋଦ୍ଧାରକଧର୍ମାଧ୍ୟକ୍ଷ ଯେ କେତେ ଉପସ୍ଥିତଥିଲେ ତାହା ସଂଖ୍ୟାତୀତ । ଅତ୍ର ଗ୍ରାମ ଓ ଯୁଧିଷ୍ଠିର କଳ୍ପନରପତିଙ୍କର ସୁଦ୍ଧା ସେଠାରେ ଅନୁପସ୍ଥିତ ନଥିଲା । ବିଶେଷତଃ ଉପରୋକ୍ତ ବିଷୟବିଚାରବେଳେ ମହର୍ଷି ପ୍ରଣୀତ ଶାସ୍ତ୍ରୋକ୍ତ ଅନୁସାରେ ଜଗଦମ୍ବା ଶ୍ରୀମତୀଅନ୍ନପୂର୍ଣ୍ଣାଦେବୀଙ୍କଠାରେ ବହୁବ୍ୟୟ ଓ ଆୟାସସାଧ୍ୟ ସହସ୍ର ଚଣ୍ଡୀ ଉଦ୍ୟୋଗଦ୍ୱାରା ଯେଉଁ ବିଘ୍ନୋତ୍ସାରଣ ବିଧି ଅନୁଷ୍ଠିତ ହୋଇଥିଲା ତହିଁରେ ସୁପ୍ରସନ୍ନହୋଇ ମୁକ୍ତିକ୍ଷେତ୍ରର ପରମାରାଧ୍ୟଦେବତା ଅନ୍ନପୂର୍ଣ୍ଣା ଓ ବିଶ୍ୱନାଥଦେବ ପରମଭକ୍ତ ପଣ୍ଡିତଙ୍କ ମୁଖରେ ନିର୍ବିଘ୍ନରେ ସିଦ୍ଧାନ୍ତପ୍ରକାଶକରି ସନାତନଧର୍ମ ରକ୍ଷାକରିଅଛନ୍ତି । ସେହିଧର୍ମରକ୍ଷାର୍ଥସିଦ୍ଧାନ୍ତିତ ଶ୍ରୀପରମେଶ୍ୱରାଦେଶ ସର୍ବସାଧାରଣଙ୍କର ଶିରୋଧାର୍ଯ୍ୟ । " ବ୍ରାହ୍ମଣକାତକ୍ଷେ ଯୁବତୀବିବାହ ନିଷିଦ୍ଧ" ଏହାସେହି ପରମେଶ୍ୱରଙ୍କ ଅନ୍ୟତମ ଆଦେଶମାତ୍ର । ଏହି ଆଦେଶରେ ଅବହେଳା ବା ଅନାସ୍ଥା ପ୍ରକାଶକରି ଯେଉଁମାନେ ଏଣିକି ବାଦ ବିସମ୍ବାଦ ଉଠାଇବେ ଆମ୍ଭେ ସେଥିରପ୍ରତ୍ୟୁତ୍ତର ଦେବାକୁ କୁଣ୍ଠିତ । ଯେମାନେସରଳଚିତ୍ତରେ ଯଦି ଯୁବତୀ ବିବାହର ଅପକାରିତା ଓ ବାଳିକା ବିବାହର ଉପକାରିତା ଜାଣିମାଇଚ୍ଛାକରନ୍ତି ତେବେ ପରମମୁକ୍ତିକ୍ଷେତ୍ରରୁ ସନାତନଧର୍ମରକ୍ଷାର୍ଥ ପ୍ରକାଶିତ ଓ ପ୍ରଚରିତ ପତ୍ରିକାଟିଏ ପାଠକରନ୍ତୁ । ହୃଦୟରୁ ମୋହ ଅପସାରିତହେବ । ଅଜ୍ଞତାନଷ୍ଟ ହେବ । ଦୁର୍ବଳ ହୃଦୟ ସବଳହେବ ।

ପ୍ରକାଶକ—

ବ୍ରାହ୍ମଣ ଜାତି ପକ୍ଷେ

# ଯୁବତୀ ବିବାହ ଖଣ୍ଡନ ।



ଯାନୁୟାରି ତା ୫ ରିଖର ଦୈନିକ ଆଶାରେ ପ୍ରକାଶିତ ଶ୍ରୀ ଅନନ୍ତତ୍ରିପାଠୀଶର୍ମାଙ୍କର "ଯୁବତୀ ବିବାହ" ଶୀର୍ଷକପ୍ରବନ୍ଧର ସଂକ୍ଷିପ୍ତ ସମାଲୋଚନା ନିମ୍ନରେ ପ୍ରକାଶିତ ହେଲା । ପାଠକବର୍ଗ ବିବେଚନା କରିବେ । ଶିରୋମଣି ପଣ୍ଡିତେ ଅଷ୍ଟବିଧବିବାହ ଲେଖିଲାପରେ ଲେଖିଅଛନ୍ତି "ଶେଷୋକ୍ତ ଚତୁଷ୍ଟୟ ଅପ୍ରାପ୍ତବୟସ୍କା ବାଳିକାପକ୍ଷରେ ସମ୍ଭବପରନୁହେଁ" । ପରେ ସେହି ଶେଷୋକ୍ତ ବିବାହଚତୁଷ୍ଟୟ ବିଶ୍ଳେଷଣକରି ଯୁବତୀ ବିବାହ ପଣ୍ଡିତେ ପ୍ରତିପାଦନ କରିଅଛନ୍ତି । ଆମ୍ଭେସୁଦ୍ଧା କହୁଛୁ, ସେହିଶେଷୋକ୍ତ ବିବାହଚତୁଷ୍ଟୟ ବାଳିକାପକ୍ଷରେ ଅସମ୍ଭବ । କାରଣ- ବର୍ତ୍ତମାନ ସେହି ବିବାହଚତୁଷ୍ଟୟ ସ୍ମୃତିଶାସ୍ତ୍ରରେ ମାତ୍ରଦେଖାଯାଏ । ଆଜିକାଲି ଲୋକରେ ତାହା ବିବାହଶ୍ରେଣୀରେ ପରିଗଣିତନୁହେଁ । ଆଚରଣତ ବହୁଦୂରରକଥା । ବର ଓ କନ୍ୟାରସମ୍ମତିକ୍ରମେ ଯେଉଁସମାଗମହୁଏ ତାହା ଗାନ୍ଧର୍ବନାମରେ ଅଭିହିତବୋଲି ପଣ୍ଡିତେ ଯାହାଲେଖିଅଛନ୍ତି ସେଥିରେ ଆମ୍ଭର ମତଦ୍ୱୈଧନାହିଁ । ଧନଦ୍ୱାରା ସ୍ତ୍ରୀର ଆହରଣକୁ ରାକ୍ଷସବିବାହ ବୋଲି ପଣ୍ଡିତେ ଯାହାଲେଖିଅଛନ୍ତି, ତାହା ବଡଆଶ୍ଚର୍ଯ୍ୟର କଥା । କୌଣସିଧର୍ମଶାସ୍ତ୍ରରେ ଏପରି ବିବାହରନାମ ରାକ୍ଷସବିବାହବୋଲି ଲେଖାହୋଇନାହିଁ, ବୋଧହୁଏ ପଣ୍ଡିତେ ଏପରିମନଗଢାକଥାଟା ଏଯେ ଲେଖିଲେ ସେଥିର କାରଣ ପ୍ରତାରଣା ହୋଇନଥିବ । କାରଣ ସେ ତାଙ୍କ ପ୍ରବନ୍ଧର ଅନେକ ସ୍ଥଳରେ ଆମ୍ଭର ଠକାମି ପାଠକଙ୍କୁ ଧରାଇଦେଇଅଛନ୍ତି । ତାଙ୍କୁ ତ ଠକାମିର ଗନ୍ଧସୁଦ୍ଧା ଜଣାନାହିଁ । ଅତଏବ ପରକୁ ଠକାଇବାରବାଲାଗି ଏପରିଲେଖିଥିବେବୋଲି ଆମ୍ଭେ ବିଶ୍ୱାସକରୁନାହୁଁ । କିନ୍ତୁ ଭ୍ରମପ୍ରମାଦପୂର୍ଣ୍ଣ ଜୀବମାତ୍ରର ଯେ କଦାପି ଭ୍ରମନଥିବ ତ ହା ଅସମ୍ଭବ । "ମୁନେରପିମତିଭ୍ରମଃ" ସୁତରାଂ ଅନୁମାନକରୁଅଛୁ ଯେ ସେଆସୁରଲେଖିବାସ୍ଥଳେ ରାକ୍ଷସ ଲେଖିପକାଇଥିବେ । ପଣ୍ଡିତଙ୍କ ସଦୃଶ ଆମ୍ଭ ଭୁଲକୁ ଦୋଷବୋଲି ବାଛିବା ଅଭ୍ୟାସନାହିଁ । ସୁତରାଂ ତାଙ୍କର ଭୁଲଟିକୁ ଠାଏମାତ୍ର ଏଠାରେ ଭୁଲବୋଲି ଦେଖାଇ ଦେଉଅଛୁଁ । ଏପରି ଭୁଲଖୋଜିଲେ ପଣ୍ଡିତଙ୍କ ପ୍ରବନ୍ଧମଧ୍ୟରେ ଗଣ୍ଡାଗଣ୍ଡା ବାହାରିବ । ପୁସ୍ତକର ଆମୂଲସ୍ଥାନ ବୃଥା

ଲାପରେ ପୂର୍ଣ୍ଣହେବ । ବଳାତ୍କାରରେ ସ୍ତ୍ରୀର ଅପହରଣକୁ ରାକ୍ଷସକହନ୍ତି । ନିଦ୍ରିତା କିମ୍ବା ଉନ୍ମତ୍ତା ସ୍ତ୍ରୀର ସମ୍ଭୋଗକୁ ପୈଶାଚକହନ୍ତି । ପାଠକେ, ବିଚାରକରନ୍ତୁ, ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ଏହି ସୁବିଶାଳ ଭାରତବର୍ଷରେ ଯେଉଁସନାତନ ଧର୍ମଶାସ୍ତ୍ର ସକଳ ବ୍ୟବହୃତହୁଏ, ତହିଁରେ ସୁପବିତ୍ର ବ୍ରାହ୍ମଣାଦି ଚତୁର୍ବର୍ଣ୍ଣର ଧର୍ମ କଥିତହୋଇ-ଅଛି । ତଦନୁସାରେ କେବଳ ଏହିଦେଶରେ ଧର୍ମନୀତିର ବ୍ୟବହାରଘଟେ । ଅତି ଅଳ୍ପର ବ୍ୟବହାର ଚଳେ । ଉପରୋକ୍ତ ଗାନ୍ଧର୍ବ ଆସୁର ରାକ୍ଷସ ଓ ପୈଶାଚ ବିବାହପ୍ରଥାକୁ ବିବାହରୂପେ କେହି ସ୍ୱୀକାରସୁଦ୍ଧା ଆଜକାଲି ଲୋକେ କରୁନାହାନ୍ତି । ତନ୍ମଧ୍ୟରୁ ଗାନ୍ଧର୍ବ କ୍ଷତ୍ରିୟ ଓ ଶୂଦ୍ରକୁଳରେ କ୍ୱଚିତ୍ ଚଳିଥାଏ । କ୍ଷତ୍ରିୟକୁଳରେ ଆଜକାଲି ଗାନ୍ଧର୍ବ ବିବାହିତାସ୍ତ୍ରୀ ଧର୍ମପତ୍ନୀ ନାମରେ ଅଭିହିତହୁଏନାହିଁ । ଭୋଗିନୀନାମରେ ଅଭିହିତ ହୋଇଥାଏ । ଶୂଦ୍ରଜାତିରେ ଗାନ୍ଧର୍ବ ବିବାହିତାସ୍ତ୍ରୀ-କୁ ଧୂଆଧୂଇ ମାଇପ କହନ୍ତି । ଦୈବ ଓ ପୈତୃକ କାର୍ଯ୍ୟବେଳେ ସେପରି ସ୍ତ୍ରୀର ସାହାଯ୍ୟନେବା ଦୂରେଥାଉ, ତାକୁ ଘରରୁ ଦୂରକରିଦିଅନ୍ତି । ଏହା ଅଶାସ୍ତ୍ରୀ-ୟ ନୁହେଁ । ମନୁ କହିଅଛନ୍ତି "ଇଚ୍ଛୟାନ୍ୟୋନ୍ୟ ସଂଯୋଗଃ କନ୍ୟାୟାଶ୍ଚ ବରସ୍ୟଚ । ଗାନ୍ଧର୍ବଃ ସତୁବିଜ୍ଞେୟୋ ମୈଥୁନ୍ୟଃକାମସମ୍ଭବଃ,' ଅର୍ଥ—ବର ଓ କନ୍ୟା ଉଭୟଙ୍କର ପରସ୍ପରଇଚ୍ଛାପୂର୍ବକ ସଂଯୋଗରନାମ ଗାନ୍ଧର୍ବ; ଏହା କାମୋଦ୍ରେକବେଳେ କେବଳ ମୈଥୁନାର୍ଥ ଘଟେ । ଏହିଶ୍ଳୋକପରେ "ଚତୁରୋବ୍ରାହ୍ମଣସ୍ୟାଦ୍ୟାନ୍ ପ୍ରଶସ୍ତାନ୍ କବୟୋ ବିଦୁଃ " ଅର୍ଥ-'ବ୍ରାହ୍ମଣର ବ୍ରାହ୍ମଦୈବ ପ୍ରାଜାପତ୍ୟ ଓ ଆର୍ଷ ଏହି ଚତୁର୍ବିଧ ବିବାହ ପ୍ରଶସ୍ତ' ବୋଲି ଲେଖିଥିବାରୁ ଗାନ୍ଧର୍ବ ନିନ୍ଦ୍ୟବୋଲି ମନୁଙ୍କ ଅଭିପ୍ରାୟ ସୁବ୍ୟକ୍ତହୁଏ । ଆଉଠାଏ ସୁଦ୍ଧା ମନୁ କହିଅଛନ୍ତି " ବ୍ରାହ୍ମ୍ୟାଦିଷୁବିବାହେଷୁ ଚତୁର୍ଷ୍ୱେବାନୁପୂର୍ବଶଃ । ବ୍ରହ୍ମବର୍ଚ୍ଚସ୍ୱିନଃ ପୁତ୍ରା ଜାୟନ୍ତେ ଶିଷ୍ଟସମ୍ମତାଃ । ରୂପସତ୍ତ୍ୱଗୁଣୋପେତା ଧନବନ୍ତୋ ଯଶସ୍ୱିନଃ । ପର୍ଯ୍ୟାପ୍ତଭୋଗାଧର୍ମିଷ୍ଠା ଜୀବନ୍ତି ଚ ଶତଂ ସମାଃ । ଇତରେଷୁତୁଶିଷ୍ଟେଷୁ ନୃଶଂସାନୃତବାଦିନଃ । ଜାୟନ୍ତେ ଦୁର୍ବିବାହେଷୁ ବ୍ରହ୍ମଧର୍ମ ଦ୍ୱିଷଃ ସୁତାଃ । ଅନିନ୍ଦିତୈଃ ସ୍ତ୍ରୀବିବାହୈରନିନ୍ଦ୍ୟା ଭବତିପ୍ରଜା । ନିନ୍ଦିତୈର୍ନିନ୍ଦିତା ନୃଣାଂ ତସ୍ମାନ୍ନିନ୍ଦ୍ୟାନ୍ ବିବର୍ଜୟେତ୍ " ଅର୍ଥ-- ବ୍ରାହ୍ମଦୈବ ପ୍ରାଜାପତ୍ୟ ଓ ଆର୍ଷ ଏହି ଚତୁର୍ବିଧ ବିବାହରେ ବିବାହିତାସ୍ତ୍ରୀଠାରୁ ମାତ୍ର ଯେଉଁପୁତ୍ରଜାତହୁଏ, ସେ କେବଳ ବ୍ରହ୍ମତେଜରେ ଯୁକ୍ତ ଓ ଶିଷ୍ଟସଂମତ ହୋଇଥାଏ, ଏବଂ ସେ ରୂପ ବଳ ଧନ ଧର୍ମ ଯଶଃପ୍ରଭୃତି ଗୁଣଗଣରେ ପୂର୍ଣ୍ଣହୁଏ, ଶତବର୍ଷ ଜୀବନଲାଭକରେ । ଆଉ ଗାନ୍ଧର୍ବ ଅସୁର ରାକ୍ଷସ ଓ ପୈଶାଚ ଏହିଚତୁର୍ବିଧବିବାହରେ ବିବାହିତାସ୍ତ୍ରୀଠାରୁ ଯେଉଁପୁତ୍ରହୁଏ ସେ

କ୍ରୂର ଓ ମିଥ୍ୟାବାଦୀହୁଏ । ସୁତରାଂ ଏଗୁଡ଼ିକ ଦୁର୍ବିବାହ ବା ନିନ୍ଦ୍ୟ ବିବାହ । ଏନିନ୍ଦ୍ୟବିବାହ ସମ୍ଭୂତ ସନ୍ତାନ ବ୍ରାହ୍ମଣୋଚିତ ପବିତ୍ରଧର୍ମରେ ଦ୍ୱେଷାଚରଣକରେ ପ୍ରଶସ୍ତ ବିବାହ ସମ୍ଭୂତପ୍ରଜା ପ୍ରଶସ୍ତହୁଏ ଓ ନିନ୍ଦିତ ବିବାହସମ୍ଭୂତ ପ୍ରଜା ନିନ୍ଦିତହୁଏ; ସୁତରାଂ ନିନ୍ଦ୍ୟବିବାହ ବର୍ଜନକରିବାକୁହେବ" । ଏହିମନୁବଚନରୁ ଗାନ୍ଧର୍ବାଦି ଗୃହେତି ବିବାହ ନିଷିଦ୍ଧହୋଇଅଛି । ସୁତରାଂ କୌଣସିଗୃହ୍ୟସୂତ୍ରକାର ଏହି ଶେଷୋକ୍ତ ଚାରି ବିବାହ ବିଧିର ନାମଗନ୍ଧ ଉଲ୍ଲେଖକରିନାହାନ୍ତି । ଶିରୋମଣି ପଣ୍ଡିତେ କହିପାରିବେ କି କେଉଁ ଗୃହ୍ୟସୂତ୍ରରେ ତାଙ୍କର ଯୁବତୀ ବିବାହ ପ୍ରତିପାଦନଶେଷୋକ୍ତ ଚାରିବିବାହର କର୍ତ୍ତବ୍ୟତା ଓ ବିଧିର ଉଲ୍ଲେଖଅଛି ?

ପଣ୍ଡିତଙ୍କମତରେ ସ୍ମୃତି ଅପ୍ରମାଣ । ବେଦ ଓ ଗୃହ୍ୟସୂତ୍ର ମାତ୍ର ପ୍ରମାଣ ଏହିପ୍ରମାଣ ଗୃହ୍ୟସୂତ୍ରମଧ୍ୟରେ ତାଙ୍କ ଯୁବତୀ ବିବାହ ପ୍ରତିପାଦକ ଗାନ୍ଧର୍ବାଦି ଶେଷୋକ୍ତ ଚାରିବିବାହର ପ୍ରମାଣ ଦେଖିବାକୁ ପାଇବା ଅସମ୍ଭବ । ଏବେ ଆଉଗୋଟିଏ ତାଙ୍କର ପ୍ରମାଣଭୂତ ବୈବାହିକ ବୈଦିକମନ୍ତ୍ରରେ ସୁଦ୍ଧା ସେହିଗାନ୍ଧର୍ବାଦି ଶେଷୋକ୍ତ ବିବାହ ଚତୁଷ୍ଟୟର ପ୍ରମାଣ ଦେଖାଇପାରିବେକି ? ବୈବାହିକ ବୈଦିକ ମନ୍ତ୍ରମାନଙ୍କରେ କନ୍ୟା ପିତାଦ୍ୱାରା ବରର ଅର୍ଚ୍ଚନା ଓକନ୍ୟାଦାନଉକ୍ତଥିବାରୁ ବ୍ରାହ୍ମଦୈବ ପ୍ରାଜାପତ୍ୟ ଓ ଆର୍ଷ ଏହିପ୍ରାଥମିକ ବିବାହ ଚତୁଷ୍ଟୟ ମାତ୍ର ସମ୍ଭବପରହେବ । ଶେଷୋକ୍ତ ଗାନ୍ଧର୍ବାଦି ବିବାହ ଚତୁଷ୍ଟୟ କଦାପି ସମ୍ଭବପରହୁଏନାହିଁ । କାରଣ ସେହି ଶେଷୋକ୍ତ ବିବାହମାନଙ୍କରେ ବରାର୍ଚ୍ଚନା ଓ କନ୍ୟାଦାନ ଆବଶ୍ୟକନୁହେ ।

ପାଠକେ ଶେଷୋକ୍ତ ବିବାହଚତୁଷ୍ଟୟଦ୍ୱାରା ଯୁବତୀ ବିବାହ ପ୍ରତିପାଦକ ଆମ୍ଭଶିରୋମଣି ପଣ୍ଡିତଙ୍କର ଠକାମି ବା ପରପ୍ରତାରଣା ବୁଝିଲେନାହିଁ । ଏବେତାଙ୍କର ପୂର୍ବୋକ୍ତ ଯୁବତୀ ବିବାହ ପ୍ରତିପାଦନ ଚାତୁରୀ ନା କୌଶଳ ?

ଆଜିକାଲି ଶେଷୋକ୍ତ ଗାନ୍ଧର୍ବାଦି ବିବାହ ଚତୁଷ୍ଟୟକୁ କନ୍ୟାଚୋରିବୋଲି କହିଲେ ଅଯୌକ୍ତିକ ହେବନାହିଁ । କାରଣ ସେପରିବିବାହରେ ଉତ୍ସବନାହିଁ, ଆନନ୍ଦନାହିଁ ଭତନାହିଁ କି ଭୋଜନନାହିଁ, ଅଛି କେବଳ କନ୍ୟା ପିତାର ମୁଖମ୍ଳାନି । ମାତାପିତାର କ୍ରନ୍ଦନ ଓ ବାନ୍ଧବସ୍ୱଜନଙ୍କର କଳଙ୍କରଟନା, କାରଣ ସେହି ୨ ବିବାହମାନଙ୍କରେବର ଓ କନ୍ୟା ଉଭୟଙ୍କ ଇଚ୍ଛାହେଲେ ସମାଗମହେବ । ସେସମାଗମର ନାମହିବିବାହ । ସୁତରାଂ ମାତା ପିତା ବନ୍ଧୁବାନ୍ଧବ [illegible]ପରିବାରଙ୍କର ମନୋନୟନ ପର୍ଯ୍ୟନ୍ତ କଥାନଥାଏ । ବିବାହପରେ କନ୍ୟାପିତା ଜୁଆଁଇଙ୍କୁ ଯଦି ଉପଯୁକ୍ତମନେକରିବ ତେବେ କିଛି ଦଅପେନା କରିପାରେ । କିନ୍ତୁ ଦାନତ କରିପାରେନାହିଁ ।

ଯେହେତୁ ପୁରୁଷସଂଗତା କ୍ଷତଯୋନିର ଦାନ ନିଷିଦ୍ଧ । ଯଦି କନ୍ୟାପିତ୍ରାଦିଙ୍କ-
ର କୁଆଁରୀଟି ମନୋନୀତ ନୁହେ ତେବେ ଚିରଦିନ ସେ ବରକନ୍ୟାଙ୍କ ପ୍ରତି ଶାପ-କୌତୁ
କ ଅର୍ପଣ କରନ୍ତି । କନ୍ୟା ପିତ୍ରାଦିଙ୍କର ମନୋନୀତ ହେଉ କିମ୍ବା ନହେଉ, ଉକ୍ତ ବି
ବାହକୁ ବିବାହ ନକହି କଳଙ୍କ କହିବା ଅସଂଗତ ନୁହେଁ, ଚିରଦିନ ଲୋକେ ଉକ୍ତ ବର
କନ୍ୟାଙ୍କ ବିବାହକୁ ଆଙ୍ଗୁଠି ନଦେଖାଇବେ ଏହା କେତେ ମୋଟେ ନୁହେଁ । କଳଙ୍କିତ
ର ଆଦର୍ଶସ୍ଥାନ ଅଧିକାର କରିବେ । " ତେବେ ଯୁବତୀ ବିବାହ ନିନ୍ଦନୀୟ ନୁହେଁ "
ପଣ୍ଡିତଙ୍କ ଏହି ଲେଖା ଦେଖି ପାଠକେ ଅପୂର୍ବାନନ୍ଦ ଅନୁଭବ କରିବେ । ସନ୍ଦେହ
ନାହିଁ ।

ଶେଷୋକ୍ତ ବିବାହ ଚତୁଷ୍ଟୟର ଗୌରବ ଏପ୍ରକାର, ଏଥିରୁ ଯୁବତୀ ବିବାହମତ
ଅନିନ୍ଦ୍ୟଭାବେ ପ୍ରତିପନ୍ନ ହୋଇଗଲା । ପାଠକେ ଏବେ ଶୁଣନ୍ତୁ- ପ୍ରାଥମିକ ଚତୁ
ର୍ବିବାହର ବିବେଚନା । ପ୍ରାଥମିକ ବିବାହ ଚତୁଷ୍ଟୟ କନ୍ୟାଦାନ ବିନା ସମ୍ପାଦିତ
ହୋଇନପାରେ ସେହି କନ୍ୟାଦାନର ମୁଖ୍ୟ ଅଧିକାରୀ ପିତା । ତଦଭାବେ
ଜ୍ୟେଷ୍ଠଭ୍ରାତାଦି । ଅତଏବ କନ୍ୟା ପିତାଙ୍କ ସମ୍ପୂର୍ଣ୍ଣ ଆନୁକୂଲ୍ୟ ବିନା ଏହି ବିବାହ
ଚତୁଷ୍ଟୟ କଦାପି ସମ୍ଭବପର ନୁହେଁ । ଯେପର୍ଯ୍ୟନ୍ତ କନ୍ୟା ପିତାଙ୍କର କନ୍ୟା ଠାରେ
ଶାସ୍ତ୍ର ଓ ଲୋକ କଥିତ ଅଧିକାର ରହିଅଛି, ସେମତରେ କେବଳ ଏହି ଚତୁର୍ବିଧ
ବିବାହ କରାଯାଏ । ତେବେ ସେ ଅଧିକାର କେଉଁ ପର୍ଯ୍ୟନ୍ତ? ଏହାର ଉତ୍ତରରେ
ଶାସ୍ତ୍ର ଦେଖାଯାଏ " ସହସ୍ୱାମ୍ୟାଦପହ୍ରାମେ ଦୃଢ଼ନାଂ ପ୍ରତିରୋଧନାତ୍ " ଅବିବାହିତା
କନ୍ୟା ଯଦି ରଜୋବତୀ ହୁଏ ତାହେଲେ ପିତାଙ୍କଠାରୁ କନ୍ୟାଧିକାର ଚାଲିଯାଏ ।
ଅତଏବ ଏକଥା ମନୁ ନିଜ ଧର୍ମଶାସ୍ତ୍ରରେ ବାରମ୍ବାର କହିଅଛନ୍ତି- ଋତୁମତୀ କନ୍ୟା ହ-
ରଣ କଲେ ବର ବା କନ୍ୟା ଦୋଷଗ୍ରସ୍ତ ନୁହନ୍ତି । ବର ଋତୁମତୀ ବିବାହବେଳେ କନ୍ୟା
ଶୁଳ୍କ କନ୍ୟା ପିତାଙ୍କୁ ଦେବା ପୂର୍ଣ୍ଣ ନିଷିଦ୍ଧ, ଏହା ହେଲା ଶାସ୍ତ୍ରର ବିଷୟ, ଲୌକିକ କର୍ତ୍ତବ୍ୟ
କିମ୍ବାର ଅଛି ତା ପାଠକେ ଟିକିଏ ଦୃଷ୍ଟି ଦିଅନ୍ତୁ ଦେଖିବେ । କନ୍ୟାର ସ୍ୱାତନ୍ତ୍ର୍ୟରେ କ
ଥନା ଅଛି । ଯେତେବେଳେ କନ୍ୟାର ବାଲ୍ୟ ଅପଗତ ହେବ ଆଉ ଯୌବନ
ସୁଲଭ ଇନ୍ଦ୍ରିୟ ସୁଖ ଚରିତାର୍ଥ କରିବାପାଇଁ ମନ ପ୍ରଧାବିତ ହେବ । ସେତେବେଳେ
ପିତାଙ୍କର ବର ନିର୍ବାଚନ ପର୍ଯ୍ୟନ୍ତ ସହ୍ୟ କରି ରହିବା କନ୍ୟା ପକ୍ଷେ ଅସମ୍ଭବ । ଯୌବନ
ଉଦୟ ହେବାପୂର୍ବରୁ କ୍ରମେ କ୍ରମେ ସ୍ତ୍ରୀର ଚିତ୍ତରେ କାଳସୁଲଭ ପୁରୁଷ ସହବାସ ଇଚ୍ଛା
ବଢ଼ିଥାଏ, ଏହା କାହାର ଅବିଦିତ ନୁହେଁ । ସୁତରାଂ ଇନ୍ଦ୍ରିୟ ଚରିତାର୍ଥ ବିଷୟ
ରେ ପ୍ରବୃତ୍ତ ରମଣୀ କେବଳ ରୂପରେ ବିମୁଗ୍ଧ ହୋଇପଡ଼ିବ । ନିଜର ଚିରଜୀବନ

ଅଁଣାଭିରଷାଇ ଅଧାର ପତିଙ୍କୁ ବରଣକଲାବେଳେ ସେ ତାଙ୍କର ସକଳଗୁଣ ଅନ୍ୱେଷଣକରିପାରିବା ପର୍ଯ୍ୟନ୍ତ ଅବସର ପାଇପାରିବନାହିଁ । ଯେହେତୁ ତାହାରବୁଦ୍ଧି ପରିପକ୍ୱନଥାଏ, ବୟସ୍ୟାନୁଭବ ନଥାଏ, ବରଗୁଣାନ୍ୱେଷଣ ଦ୍ୱାରର ସୁବିଧାପାଇଲେ ସୁଦ୍ଧା ଯେ ଗୁଣ ଚିହ୍ନିପାରିବନାହିଁ, ସେକନ୍ୟା କିପରି ବାଲ୍ୟ ଯୌବନ ସନ୍ଧିରେ ଅନ୍ୱେଷଣକରିପାରିବ ? କେବଳ ଶିକ୍ଷାବଳରେ ସେହିଗୁଣାନ୍ୱେଷଣଶକ୍ତି ଉପାର୍ଜନକରି ଅସମ୍ଭବ । ବୟସ୍ୟାନୁଭବର ବାହୁଲ୍ୟରେମାତ୍ର ସେହିଶକ୍ତି ଉପାର୍ଜନ କରି ସହଜପନ୍ଥା ବିଜ୍ଞ ବ୍ୟକ୍ତିଙ୍କ ବିବେଚନାରେ ଏହିସମ୍ବନ୍ଧେପ୍ରମାଣ । କେବଳରୂପମୁଗ୍ଧା ରମଣୀ ଯେଉଁବର ବରଣକରିବ ସେହିବରଯେ କନ୍ୟାବନ୍ଧୁଙ୍କର ଠିକ୍ ମନୋନୀତହେବ, ତାହା କିଏକହିପାରିବ ? ଯଦ୍ୟପି ମନୋନୀତହେବ, ତେବେ ସୁଦ୍ଧା ସେହିବରକନ୍ୟାଙ୍କର ବିବାହରେ ସମାଜର ଆନନ୍ଦହେବନାହିଁ କି ଉତ୍ସବହେବନାହିଁ, ଯେହେତୁ ପୂର୍ବରୁ ସମ୍ଭୋଗହୋଇଯାଇଥିବ, ଅତଏବ ବୈବାହିକ ମନ୍ତ୍ରୋକ୍ତି ଅନୁସାରେ କିମ୍ବା ଗୃହ୍ୟସୂତ୍ରାନୁସାରେ ସେହିକନ୍ୟାର ଗାନ୍ଧର୍ବାଦି ଶେଷୋକ୍ତ ବିବାହ ଚତୁଷ୍ଟୟ ନିଷିଦ୍ଧ । ସୁତରାଂ ହିନ୍ଦୁର ପ୍ରଶସ୍ତନିନ୍ଦ୍ୟ ଓ ନିଷିଦ୍ଧ ଯେଉଁ ଅଷ୍ଟବିଧ ବିବାହଅଛି, ସେଥିରୁ ସେ ଭିଲଅବର ଓ କନ୍ୟା କେଉଁବିଧିରେ ବିବାହିତହେବେ ଯେ ଉତ୍ସବ ଆନନ୍ଦ ରହିବ ? କେବଳ ବର ଓ କନ୍ୟାଙ୍କ କ୍ଷଣଭଙ୍ଗୁର ଉତ୍ସବାନନ୍ଦ ମାତ୍ର ।

ପାଠକେ ! ଶିରୋମଣି ପଣ୍ଡିତେ ଉପର୍ଯ୍ୟୁକ୍ତ ଅଷ୍ଟବିଧ ବିବାହ କେବଳ ଯୁବତୀ ପକ୍ଷରେ ମାତ୍ର ସମ୍ଭବବୋଲି ଯୁକ୍ତି ତର୍କାଦି ଦୃଷ୍ଟାନ୍ତଦେଖାଇ ପାଣରେ ପ୍ରଭଞ୍ଜନବନ୍ଧନୋଦମସଦୃଶ ଯେଉଁ ମହାପ୍ରୟାସ ସ୍ୱୀକାର କରିଅଛନ୍ତି, ତାହାଦ୍ୱାରା ଆକାଶ କୁସୁମିତହେବା ଅସମ୍ଭବନୁହେଁ ।

ବସ୍ତୁତଃ ବୁଝାଯାଏ, ଧର୍ମଶାସ୍ତ୍ରମାନଙ୍କରେ ଯେଉଁ ଅଠପ୍ରକାର ବିବାହ' ତାହା ଦୁଇଶ୍ରେଣୀରେ ବିଭକ୍ତ । ବାଳିକା ବିବାହ ଓ ଯୁବତୀ ବିବାହ । ପ୍ରାଥମିକ ବ୍ରାହ୍ମ-ଦୈବ ପ୍ରାଜାପତ୍ୟ ଓ ଆର୍ଷ ଏହି ଚାରୋଟି ବିବାହ ବାଳିକା ବିବାହ । ଏବଂ ଗାନ୍ଧର୍ବାଦି ଶେଷୋକ୍ତ ଚତୁଷ୍ଟୟ ଯୁବତୀ ବିବାହ, ବାଲ୍ୟବିବାହ ପ୍ରଶସ୍ତ, ବେଦ ଓ ଗୃହ୍ୟସୂତ୍ର ପ୍ରତିପାଦିତ, ବର, କନ୍ୟା, ବରପକ୍ଷ ଓ କନ୍ୟାପକ୍ଷ, ଆଉ ସମାଜ ଏସକଳଙ୍କର ଆନନ୍ଦ ବିଧାୟକ. ଯୁବତୀବିବାହ ନିନ୍ଦ୍ୟ, ନିଷିଦ୍ଧ, ବେଦ ଓ ଗୃହ୍ୟସୂତ୍ରର ଅସଂମତ । ବରକନ୍ୟାଙ୍କଭିନ୍ନ ଅନ୍ୟଙ୍କର ପ୍ରାୟ ଦୁଃଖଦାୟକ । ଏହାହିଁ ସକଳଶାସ୍ତ୍ର ସଂମତ । କ୍ଷତ୍ରିୟପକ୍ଷରେ ଯୁବତୀବିବାହ ପ୍ରଶସ୍ତ ସତ୍ୟ । କିନ୍ତୁ ଯୁବତୀ ବିବାହ ବିଧିର ଅଭାବରୁ ତାହା ବାଲ୍ୟବିବାହ ପଦ୍ଧତିକ୍ରମେ କରାଯାଇଥାଏ । ଏବିଷୟ ବିଶେଷରୂପେ ଶାସ୍ତ୍ର

ମା କରେ ଉଲ୍ଲିଖିତଅଛି । ବ୍ରାହ୍ମଣପକ୍ଷରେ ବାଲ୍ୟବିବାହମାତ୍ର ଅମୃତଲକ୍ଷ୍ୟଥିବାରୁ ଏଠାରେ ସେ ସବୁଦେଖାଇ ପାଠକଙ୍କ ଅମୂଲ୍ୟ ସମୟ ନଷ୍ଟକରୁନାହୁଁ । ଏହିଶାସ୍ତ୍ରୀୟ ବିଷୟର ବିପରୀତବାଦୀଗଣଯେ ହସ୍ତରେ ଚଂଦ୍ର ଧାରଣୋଦ୍ୟମକରନ୍ତି ବୃଥା ପ୍ରୟାସକରନ୍ତି ଏଥିରେ ଆଉ ସଂଦେହନାହିଁ । ପାଣ୍ଡିତ୍ୟବଳରେ ଶାସ୍ତ୍ର ଚଳେନାହିଁ । ଚଳେ କେବଳ ଶିଷ୍ଟାଦୃତ ଆର୍ଯ୍ୟର ବ୍ୟବହାର ପରଂପରା ଆଦର୍ଶନେଇ, ପାଠକେ ! ବିବେଚନା କରନ୍ତୁ । ପଣ୍ଡିତେ ଲେଖିଅଛନ୍ତି – " ଯଦି ବିବାହ କେବଳ ବାଳିକାରେବୋଲି ଗ୍ରାହ୍ୟ ହୁଅନ୍ତା, ତେବେ ଏହି ଛଅଗୋଟି ବିବାହ ଶ୍ରେଣୀର ଅନ୍ତର୍ଭୁକ୍ତ ହୋଇନଥାନ୍ତା " ଅତଏବ ଲେଖିଅଛନ୍ତି, " ବାତ୍ସ୍ୟାୟନ ମହର୍ଷି ପ୍ରଣୀତ କାମସୂତ୍ରରେ ଗୋଟିଏ ବିଶିଷ୍ଟ ପ୍ରମାଣ ଦେଖାଯାଏ । ଯଦି ବାଳିକା ବିବାହିତ କେବଳ ପ୍ରଚଳିତଥାନ୍ତା ଇତ୍ୟାଦି ଉକ୍ତିମାନଙ୍କରୁ ନିଜେ ପଣ୍ଡିତଙ୍କ ମତରେ ଏବଂ ବାତ୍ସ୍ୟାୟନଙ୍କ ମତରେ ସୁଦ୍ଧା ବାଲ୍ୟ ବିବାହ ଓ ଯୁବତୀ ବିବାହ ଉଭୟଥିବାର ଆଭାସ ଦେଖାଯାଏ । ଯେହେତୁ ଉକ୍ତ ବାକ୍ୟମାନଙ୍କରେ " କେବଳ " ପଦ ପ୍ରୟୋଗ କରିଅଛନ୍ତି । କିନ୍ତୁ ବଡ଼ଦୁଃଖର କଥା - ପରେ ପଣ୍ଡିତେ ଉକ୍ତ ବାଳିକା ବିବାହକୁ କୁଣ୍ଡେଇଖେଳବୋଲି ଥଟ୍ଟା କରିପକାଇଅଛନ୍ତି । ଶାସ୍ତ୍ରୀୟ ବିବାହରେ କଣ ଏପରି କୌଣସି ପ୍ରୟୋଜନନାହିଁଯେ ତା ନିରର୍ଥକ କୁଣ୍ଡେଇଖେଳହେବ? ନିରର୍ଥକ କୁଣ୍ଡେଇଖେଳ ବା ତାଙ୍କମତରେ ଶାସ୍ତ୍ରୀୟ କିପରି ? ପାଠକେ ବୁଝିନିଅନ୍ତୁ ।

ପଣ୍ଡିତେ " ପ୍ରତ୍ୟେକ ବିବାହରେ ବର ଓ କନ୍ୟାର ନୈତିକ ବିଷୟରେ ଅଭିଜ୍ଞତା ଆବଶ୍ୟକ । କୁଣ୍ଡେଇଖେଳତୁଲ୍ୟ ଆଧୁନିକ ବିବାହବେଳେ ବର, କନ୍ୟା, କନ୍ୟାପିତା ଓ ପୁରୋହିତ ସମସ୍ତେ ଇତ୍ୟାଦି ମନ୍ତ୍ରର ଅର୍ଥ କେହି ବୁଝନ୍ତି ନାହିଁ ", ବୋଲି ପ୍ରକାଶ କରିଅଛନ୍ତି ଯେ ଯୁବତୀବିବାହସ୍ଥଳେ ଏହିଗୁଡ଼ିକର ଅର୍ଥ ବୁଝନ୍ତିବୋଲି ତାଙ୍କର ଅଭିପ୍ରାୟ ଥିବା ସମ୍ଭବ । ପଣ୍ଡିତେ ଉକ୍ତମନ୍ତ୍ରର ଯେଉଁ ଶବ୍ଦାଡମ୍ବରପୂର୍ଣ୍ଣଅର୍ଥ ଲେଖିଅଛନ୍ତି ତାହା ଅଳ୍ପ କାଳର ବିବାହର ବର ଓ କନ୍ୟା ବୁଝିପାରିବେନାହିଁ ସତ୍ୟ । କିନ୍ତୁ ଯଦି ସେହିମନ୍ତ୍ରର ସରଳାର୍ଥ ସେମାନଙ୍କୁ ବୁଝାଇଦିଆଯାଏ ତେବେ ବୁଝିପାରିବେ ସଂଦେହନାହିଁ । ଆଉଗୋଟିଏକଥା– ପଣ୍ଡିତଙ୍କମତରେ କୁଣ୍ଡେଇଖେଳ ସଦୃଶ ବିବାହବିଧି ପରିଚାଳିତ ହେଉଥିବାରୁ ଅନଭିଜ୍ଞ ବର ଓ କନ୍ୟା ମନ୍ତ୍ରାର୍ଥ ବୁଝିପାରନ୍ତିନାହିଁ । କିନ୍ତୁ ତାଙ୍କମତରେ କନ୍ୟା ପିତା ଓ ପୁରୋହିତ ତ ବାଳିକନୁହନ୍ତି, ଅଭିଜ୍ଞ, ସେମାନେ ମନ୍ତ୍ରାର୍ଥ ବୁଝିପାରନ୍ତିନାହିଁବୋଲି ଲେଖିବାର କାରଣ କଣ ? ବୋଧହୁଏ- କିବ ହେବେଲେ କନ୍ୟା ପିତା ଓ ପୁରୋହିତଙ୍କୁ ବିବାହସ୍ଥଳରୁ–

ପଣ୍ଡିତଙ୍କର ବିଦୂରିତ କରିବା ଇଷ୍ଟ ଅଟଇକି? ତାହାହେଲେ ପାଶବିକ ମିଳନଠାରୁ ମାନବ ମିଥୁନଙ୍କ ମିଳନରେ ଆଉ କୌଣସିପ୍ରକାର ପ୍ରଭେଦ ରହିବ ନାହିଁ । ଯଦି ବିବାହବିଧି-କାର୍ଯ୍ୟରେ ଅତ୍ୟାବଶ୍ୟକ କନ୍ୟାପିତା ଓ ପୁରୋହିତ ମନ୍ତ୍ରାର୍ଥ ଅନଭିଜ୍ଞତାରୁ ବିବାହ ସ୍ଥଳରେ ରହିବା ପଣ୍ଡିତଙ୍କ ମତରେ ଆବଶ୍ୟକ ବିବେଚିତ ହୁଅନ୍ତି । ତେବେ ପ୍ରକୃତ ଅନାବଶ୍ୟକ ବନ୍ଧୁବାନ୍ଧବ ଜ୍ଞାତି ଓ କୁଟୁମ୍ବଙ୍କର ମଧ୍ୟ ବିବାହସ୍ଥଳେ ଉପସ୍ଥିତିର ଦରକାର କଣ? ଯେପରି ପଶୁପକ୍ଷୀ ମିଥୁନର ମିଳନ ସେପରି ମାନବମାନଙ୍କର ମିଳନ ସଂଘଟିତ ହେବ । ମନୁ ପ୍ରଭୃତି ଧର୍ମଶାସ୍ତ୍ର ଗୃହ୍ୟସୂତ୍ର ଏପରି କି ବୈଦିକ ପାଣିଗ୍ରହଣାଦି ସବୁ ମଧ୍ୟ ବ୍ୟର୍ଥ ହୋଇଯିବ । ଅହୋ ! ପଣ୍ଡିତଙ୍କର ପ୍ରସ୍ତାବ ଯୁକ୍ତି ଜଳାଞ୍ଜଳି ନର୍ତ୍ତନୋଦ୍ୟମ ପ୍ରୟାସ କରିବେ !!

ପଣ୍ଡିତେ ଲେଖିଅଛନ୍ତି – " କନ୍ୟା ଲାଜାହୋମମନ୍ତ୍ରର ଅର୍ଥ ବୁଝିବାର କଥା କିନ୍ତୁ ବୁଝିପାରେନାହିଁ । ଆଉ ମନ୍ତ୍ରରେ ଯେଉଁ ମଙ୍ଗଳକାମନା କରାଯାଇଅଛି କନ୍ୟାର ହୃଦୟରେ ସେଭାବ ମଧ୍ୟ ଉଦୟ ହୁଏନାହିଁ " ଏହାର ଉତ୍ତରରେ କହୁଅଛୁ ଏହି ଅବସ୍ଥା ଯେ କେବଳ ବାଳିକା ବିବାହରେ ଘଟେ, ତାହା ନୁହେଁ, ଯୁବତୀ ବିବାହ-ରେ ମଧ୍ୟ ଏହି ଅବସ୍ଥା କୌଣସିଠାରେ ଦୂରୀଭୂତ ହୋଇନାହିଁ । ଏ ସମ୍ବନ୍ଧେ ପୁରୋ-ହିତମାନେ ଦାୟୀ । ଉପରୋକ୍ତ କଥାରୁ ପଣ୍ଡିତଙ୍କ ମତରେ ଯୁବତୀ ବିବାହ ସମର୍ଥିତ ହେଲାକିପରି ?

" ବିବାହବେଳେ ଅଳ୍ପକାଳ କନ୍ୟା ପଟ୍ଟବସ୍ତ୍ରରେ ଆବୃତ ହୋଇ ସ୍ୱେଦାକ୍ତ ଶରୀରରେ ଅମିତ ଦୁଃଖ ଭୋଗ କରେ ଯେ ତାହାକୁ ସେ ଯେପରି କଷ୍ଟ ନ ପାଇବ ତା-ହାହିଁ ଭାବୁଥାଏ " ବୋଲି ପଣ୍ଡିତେ ଲେଖିଅଛନ୍ତି । ଏଠାରେ ପଣ୍ଡିତଙ୍କୁ ଆମ୍ଭେ ଏହି ପ୍ରଶ୍ନ କରୁଅଛୁ । ଗତମାସ ତା ୨୪ ରିଖର ଦୈନିକ ଆଶାରେ ପ୍ରକାଶିତ, ଓ ଉକ୍ତ ପ୍ରାଚୀନ ମହର୍ଷିଗଣଙ୍କର ଧର୍ମଶାସ୍ତ୍ରରୁ ଉଦ୍ଧୃତ ବାଳିକା ବିବାହ ସମର୍ଥକ ବା-କ୍ୟଗୁଡ଼ିକରେ ଆପଣ ନିଜେ ଅନାସ୍ଥା ଓ ଅନାଦର ପ୍ରକାଶ କରିଅଛନ୍ତି । ଏପରି ସ୍ଥଳେ କଠୋର ତପଃସମାଧିନିଷ୍ଠ ପ୍ରାଚୀନ ମହର୍ଷିଗଣର ସୁଦୁର୍ଲ୍ଲଭ ସେହିସବୁକଥା ଆପଣଙ୍କଠାରୁ ଅନ୍ତର୍ହିତ ହୋଇଗଲେ ଯେ ବୈବାହିକ ମହୋତ୍ସବରେ ପରମାନନ୍ଦିତା କନ୍ୟାମାନେ ନିଜ ନିଜର ବିବାହବେଳେ କଷ୍ଟ ପାଇବାର ଦୁଃଖ ଅନୁଭବ କରନ୍ତି ବୋଲି ଲେଖିପକାଇଲେ ? ପାଠକେ! ସର୍ବଜ୍ଞଶିରୋମଣି ପଣ୍ଡିତଙ୍କର ଉତ୍ତର ଶୁଣିବେ । ନିଶ୍ଚୟ ସ୍ଥିର ହୁଅନ୍ତୁ ।

ଦ୍ୱିତୀୟ ପ୍ରଶ୍ନ—କେତେଜଣ ଅବଗୁଣ୍ଠନ ବର୍ଜିତା ଯୁବତୀ ଲଜ୍ଜାତ୍ୟାଗ କରି ନିଜର

ମା କରେ ଉଲ୍ଲେଖିତଅଛୁ । ବ୍ରାହ୍ମଣପକ୍ଷରେ ବାଲ୍ୟବିବାହମାତ୍ର ଅମୂଳକ ଲକ୍ଷ୍ୟଥିବାରୁ ଏଠାରେ ସେ ସବୁ ଦେଖାଇ ପାଠକଙ୍କ ଅମୂଲ୍ୟ ସମୟ ନଷ୍ଟକରୁନାହୁଁ । ଏହି ଶାସ୍ତ୍ରୀୟ ବିଷୟର ବିପରୀତବାଦୀଗଣଯେ ହସ୍ତରେ ଚନ୍ଦ୍ର ଧାରଣୋଦ୍ଦମକର ବୃଥା ପ୍ରୟାସକରନ୍ତି ଏଥିରେ ଅଉ ସନ୍ଦେହନାହିଁ । ପାଣ୍ଡିତ୍ୟବଳରେ ଶାସ୍ତ୍ର ଚଳେନାହିଁ । ଚଳେ କେବଳ ଶିଷ୍ଟାଦୃତ ଆର୍ଯ୍ୟର ବ୍ୟବହାର ପରମ୍ପରା ଆଦର୍ଶ ନେଇ, ପାଠକେ ! ବିବେଚନା କରନ୍ତୁ । ପଣ୍ଡିତେ ଲେଖିଅଛନ୍ତି – " ଯଦି ବିବାହ କେବଳ ବାଳିକାତବୋଲି ଗ୍ରାହ୍ୟ ହୁଅନ୍ତା, ତେବେ ଏହାକୁ ଶ୍ରେଷ୍ଠ ବିବାହ ଶ୍ରେଣୀର ଅନ୍ତର୍ଭୁକ୍ତ ହୋଇନଥାନ୍ତା ।" ଆଉଠାଏ ଲେଖିଅଛନ୍ତି, " ବାତ୍ସ୍ୟାୟନ ମହର୍ଷି ପ୍ରଣୀତ କାମସୂତ୍ରରେ ଗୋଟିଏ ବିଶିଷ୍ଟ ପ୍ରମାଣ ଦେଖାଯାଏ । ଯଦି ବାଳିକା ବିବାହିତ କେବଳ ପ୍ରଚଳିତଥାନ୍ତା ଇତ୍ୟାଦି ଉକ୍ତିମାନଙ୍କରୁ ନକେ ପଣ୍ଡିତଙ୍କ ମତରେ ଏବଂ ବାତ୍ସ୍ୟାୟନଙ୍କ ମତରେ ପୂର୍ବେ ବାଲ୍ୟ ବିବାହ ଓ ଯୁବତୀ ବିବାହ ଉଭୟଥିବାର ଆଭାସ ଦେଖାଯାଏ । ଯେହେତୁ ଉକ୍ତ ବାକ୍ୟମାନଙ୍କରେ " କେବଳ " ପଦ ପ୍ରୟୋଗ କରିଅଛନ୍ତି । କିନ୍ତୁ ବଡ଼ଦୁଃଖର କଥା - ପରେ ପଣ୍ଡିତେ ଉକ୍ତ ବାଳିକା ବିବାହକୁ କୁଣ୍ଡେଇଖେଳବୋଲି ଥଟ୍ଟା କରିପକାଇଅଛନ୍ତି । ଶାସ୍ତ୍ରୀୟ ବିବାହରେ କଣ ଏପରି କୌଣସି ପ୍ରୟୋଜନନାହିଁ, ଯେ ତା ନିରର୍ଥକ କୁଣ୍ଡେଇଖେଳହେବ? ନିରର୍ଥକ କୁଣ୍ଡେଇଖେଳ ବା ତାଙ୍କମତରେ ଶାସ୍ତ୍ରୀୟ କିପରି ? ପାଠକେ ବୁଝିନିଅନ୍ତୁ ।

ପଣ୍ଡିତେ " ପ୍ରତ୍ୟେକ ବିବାହରେ ବର ଓ କନ୍ୟାର ନୈତିକ ବିଷୟରେ ଅଭିଜ୍ଞତା ଆବଶ୍ୟକ । କୁଣ୍ଡେଇଖେଳରୂପ ଆଧୁନିକ ବିବାହବେଳେ ବର, କନ୍ୟା, କନ୍ୟାପିତା ଓ ପୁରୋହିତ ସମସ୍ତେ ଇତ୍ୟାଦି ମନ୍ତ୍ରର ଅର୍ଥ କେହିବୁଝନ୍ତି ନାହିଁ ", ବୋଲି ପ୍ରକାଶ କରିଅଛନ୍ତିଯେ ଯୁବତୀବିବାହସ୍ଥଳେ ଏହିଗୁଡ଼ିକର ଅର୍ଥ ବୁଝନ୍ତିବୋଲି ତାଙ୍କର ଅଭିପ୍ରାୟ ଥିବା ସମ୍ଭବ । ପଣ୍ଡିତେ ଉକ୍ତମନ୍ତ୍ରର ଯେଉଁ ଶବ୍ଦାଡମ୍ବରପରିପୂର୍ଣ୍ଣ ଅର୍ଥ ଲେଖିଅଛନ୍ତି ତାହା ଆଜି କାଲି ବିବାହର ବର ଓ କନ୍ୟା ବୁଝିପାରିବେନାହିଁ ସତ୍ୟ । କିନ୍ତୁ ଯଦି ସେହିମନ୍ତ୍ରର ସରଳାର୍ଥ ସେମାନଙ୍କୁ ବୁଝାଇଦିଆଯାଏ ତେବେ ବୁଝିପାରିବେ ସନ୍ଦେହନାହିଁ । ଆଉଗୋଟିଏକଥା– ପଣ୍ଡିତଙ୍କମତରେ କୁଣ୍ଡେଇଖେଳ ସଦୃଶ ବିବାହବିଧି ପରିଚାଳିତ ହେଉଥିବାରୁ ଅନଭିଜ୍ଞ ବର ଓ କନ୍ୟା ମନ୍ତ୍ରାର୍ଥ ବୁଝିପାରନ୍ତିନାହିଁ । କିନ୍ତୁ ତାଙ୍କମତରେ କନ୍ୟା ପିତା ଓ ପୁରୋହିତ ତ ବାଳକ ନୁହନ୍ତି, ଅଭିଜ୍ଞ, ସେମାନେ ମନ୍ତ୍ରାର୍ଥ ବୁଝିପାରନ୍ତିନାହିଁବୋଲି ଲେଖିବାର କାରଣ କଣ ? ବୋଧହୁଏ- ବିବାହବେଳେ କନ୍ୟା ପିତା ଓ ପୁରୋହିତଙ୍କୁ ବିବାହସ୍ଥଳରୁ–

ପଣ୍ଡିତଙ୍କର ବିଦୂରିତକରିବା ଇଚ୍ଛାଅଛିକି? ତାହାହେଲେ ପାଶବିକମିଳନଠାରୁ ମାନବ ମିଥୁନଙ୍କ ମିଳନରେ ଆଉ କୌଣସିପ୍ରକାର ପ୍ରଭେଦରହିବନାହିଁ । ଯଦି ବିବାହବିଧି-କାର୍ଯ୍ୟରେ ଅତ୍ୟାବଶ୍ୟକ କନ୍ୟାପିତା ଓ ପୁରୋହିତ ମନ୍ତ୍ରାର୍ଥର ଅନଭିଜ୍ଞତାରୁ ବିବାହ ସ୍ଥଳରେ ରହିବା ପଣ୍ଡିତଙ୍କମତରେ ଆବଶ୍ୟକ ବିବେଚିତନୁହନ୍ତି । ତେବେ ପ୍ରକୃତ ଅନାବଶ୍ୟକ ବନ୍ଧୁ ବାନ୍ଧବ ଜ୍ଞାତି ଓ କୁଟୁମ୍ବଙ୍କର ସୁଦ୍ଧା ବିବାହସ୍ଥଳେ ଉପସ୍ଥିତିର ଦରକାର କଣ? ଯେପରି ପଶୁ ପକ୍ଷୀ ମିଥୁନରମିଳନ ସେପରି ମାନବଙ୍କର ମିଳନ ସଂଘଟିତହେବ । ମନୁ ପ୍ରଣୀତ ଧର୍ମଶାସ୍ତ୍ର ଗୃହ୍ୟସୂତ୍ର ଏପରି ବୈଦିକ ପାଣିଗ୍ରହଣାଦି ବିଧି ସୁଦ୍ଧା ବ୍ୟର୍ଥହୋଇଯିବ । ଅହୋ ! ପଣ୍ଡିତଙ୍କର ପ୍ରତ୍ୟୁତ୍ପନ୍ନଜ୍ଞାନାର୍ଜ୍ଜନୋଦ୍ୟମ ପ୍ରଶଂସନୀୟ !!

ପଣ୍ଡିତେ ଲେଖିଅଛନ୍ତି– " କନ୍ୟା ଲାଜାହୋମମନ୍ତ୍ରର ଅର୍ଥ ବୁଝିବାରକଥା କିନ୍ତୁ ବୁଝିପାରେନାହିଁ । ଅଉମନ୍ତ୍ରରେ ଯେଉଁ ମଙ୍ଗଳକାମନା କରାଯାଇଅଛି କନ୍ୟାର ହୃଦୟରେ ସେଥିର ସୁଦ୍ଧା ଉଦୟହୁଏନାହିଁ " ଏହାର ଉତ୍ତରରେ କହୁଅଛୁ ଏହିଅଭିପ୍ରାୟ ଯେ କେବଳ ବାଳିକା ବିବାହରେ ଘଟେ, ତାହାନୁହେଁ, ଯୁବତୀବିବାହ-ରେ ସୁଦ୍ଧା ଏହିଅଭାବ କୌଣସିଠାରେ ଦୂରୀଭୂତ ହୋଇନାହିଁ । ଏସମ୍ବନ୍ଧେ ପୁରୋହି-ତମାନେ ଦାୟୀ । ଉପରୋକ୍ତ କଥାରୁ ପଣ୍ଡିତଙ୍କମତରେ ଯୁବତୀ ବିବାହ ସମର୍ଥିତ ହେଲାକିପରି ?

" ବିବାହବେଳେ ଅଳ୍ପକାଳ କନ୍ୟା ପଟ୍ଟବସ୍ତ୍ରରେ ଆବୃତହୋଇ ଥିବାରୁ ଶରୀରରେ ଅମିତଦୁଃଖ ଭୋଗକରେ ଯେ ତାହାକୁ ସେ ଯେପରି କଷ୍ଟ ପାଇବ ତା-ହାହିଁ ଭାବୁଥାଏ " ବୋଲି ପଣ୍ଡିତେ ଲେଖିଅଛନ୍ତି । ଏଠାରେ ପଣ୍ଡିତଙ୍କୁ ଅନେ-କ ଏହିପ୍ରଶ୍ନ କରୁଅଛୁ । ଗତମାସ ତା ୨୪ ଖର ଦୈନିକ ଆଶାରେ ପ୍ରକାଶିତ, ଶ୍ରୁତି ପ୍ରାଚୀନ ମହର୍ଷିଗଣଙ୍କର ଧର୍ମଶାସ୍ତ୍ରରୁ ଉଦ୍ଧୃତ ବାଳିକା ବିବାହ ସମର୍ଥକ ବା-କ୍ୟଗୁଡ଼ିକରେ ଆପଣଙ୍କେ ଅନାସ୍ଥା ଓ ଅନାଦର ପ୍ରକାଶକରିଅଛନ୍ତି । ଏପରିସ୍ଥଳେ କଠୋର ତପଃସମାଧିନିମଗ୍ନ ପ୍ରାଚୀନମହର୍ଷିଗଣର ସୁଦୁର୍ଲଭ ସେହିସବୁକଥା ଆପଣଙ୍କ-ଠାରୁ ଅତିସହଜରେ ପାଇଗଲେ ଯେ ବୈବାହିକମହୋତ୍ସବରେ ପରମାନନ୍ଦିତା କନ୍ୟା-ମାନେ ନିଜନିଜର ବିବାହବେଳେ କଷ୍ଟ ପାଇବାରୁ ଦୁଃଖଅନୁଭବକରନ୍ତି ବୋଲି ଲେଖିପକାଇଲେ ? ପାଠକେ! ସର୍ବଜ୍ଞଶିରୋମଣି ପଣ୍ଡିତଙ୍କର ଉତ୍ତର ଶୁଣିବେ । ଟିକିଏ ସ୍ଥିର ହୁଅନ୍ତୁ ।

ଦ୍ୱିତୀୟ ପ୍ରଶ୍ନ—କେତେକଜଣ ଅବଗୁଣ୍ଠିତ କନ୍ୟା ଯୁବତୀ ଲଜ୍ଜାଭୟାଗତ ନିକର

ପ୍ରତ୍ୟଂଗଯୌବନଶୋଭାବନ୍ତ ବାନ୍ଧବ ଓ ପୁରୋହିତଙ୍କ ଦର୍ଶନର ସେମାନଙ୍କ ପାଖେ ବସି ଆପଣଙ୍କ ପରି ପଣ୍ଡିତଙ୍କଠାରୁ ମନ୍ତ୍ରାର୍ଥ ବୁଝି ସ୍ଥିରକରି ତଦନୁସାରେ ଅନୁଷ୍ଠିତ ନିଜବିବାହୋତ୍ସବବେଳେ ଉପର୍ଯ୍ୟୁକ୍ତ ଘୋରଦୁଃଖପରିବର୍ତ୍ତେ ଅପୂର୍ବାନନ୍ଦ ଅନୁଭବକ-ରନ୍ତି ? ଆପଣଙ୍କର ଅନେକ ଯଜମାନଥିବାର ଶୁଣିଅଛୁ, ଆପଣଜଣେ ପୁରୋହିତ ବୋଲି ଏ ପ୍ରଶ୍ନ କଲି ।

ପାଠକେ ! କନ୍ୟା ଏକପ୍ରମାଣ ଗ୍ରହଣକରୁଥାଏବୋଲି ପଣ୍ଡିତେ ଲେଖି ସପ୍ତପ-ଦୀବିଧାନକୁ ଗୋଟିଏ ଶପଥବୋଲି ଗଢ଼ି ପକାଇଅଛନ୍ତି । ଏହା କେଉଁଠାରୁ ବୁଝିଲେ ?

“ ମମବ୍ରତେ ତେ” ଇତ୍ୟାଦିମନ୍ତ୍ର ବରଉଚ୍ଚାରଣକରେ । କନ୍ୟା ସିନା ବାଳି-କା ଅର୍ଥ ବୁଝିବାରେ ଅକ୍ଷମ । ବର ତ ବାଳକ ନୁହେଁ, ବୋଧହୁଏ ପଣ୍ଡିତଙ୍କ ମତରେ ଭ ବରମାନେ ଏହି ମନ୍ତ୍ରାର୍ଥ ଠିକ୍ ବୁଝିବା ସମ୍ଭବ । ପାଠକେ ବିବେଚନା କରନ୍ତୁ

ଆଉ ଠାଏ ସେ ଲେଖିଅଛନ୍ତି ଯେ “ ଆଜିକାଲି ଏଧକନବାକ୍ୟରେ କେବଳ ଉଚ୍ଚାରିତ ହୁଏ ବୋଲି, ଆମ୍ଭେ କହୁ ତାହା ଆଜି କାଲି ନୁହେଁ, ଆବହମାନକାଳରୁ ସେ ସବୁ ବାକ୍ୟ ରୋମାନ୍ ବିବାହବେଳେ ଉଚ୍ଚାରିତ ହେଉଥିଲା । ପରେ ଉପଯୁକ୍ତ ସମୟରେ ଆଚରିତ ହେଉଥିଲା । ବର୍ତ୍ତମାନ ସୁଦ୍ଧା ତାହାହିଁ ହେଉଅଛି । ବିବାହବେଳେ ମନ୍ତ୍ର ଗୁଡିକର ଅର୍ଥ ଆଚରଣ କରିବା କଥା ନୁହେ । ପାଠକେ ଯେଉଁଠାରେ ମନ୍ତ୍ରାର୍ଥ ‘ ମୈଥୁନ କର୍ତ୍ତବ୍ୟ ” ବୋଲି ଜଣାଯିବ ତାହା ସେହିକ୍ଷଣି ବିବାହବେଦୀ ଉପରେ ଅନୁଷ୍ଠିତ ହେବା ସମ୍ଭବପର କି ଉପଯୁକ୍ତ ସମୟରେ ଅନୁଷ୍ଠିତ ହେବା ସମ୍ଭବପର ବୁଝନ୍ତୁ ।

ଜାନୁୟାରି ତା ୯ ରଖର ଆଶାରେ ନିଜପ୍ରବନ୍ଧରେ ସେ ଲେଖିଅଛନ୍ତି—
‘ ଏହି ବିବାହ ବ୍ରହ୍ମଚର୍ଯ୍ୟ ସମ୍ପୃକ୍ତ ଓ ଗୃହ୍ୟସୂତ୍ରରେ ଦେଖାଯାଏ । ତେବେ ପ୍ରଥମ ଋତୋଟି ମଧ୍ୟ ବାଳିକା ପକ୍ଷରେ ସମ୍ଭବପର ନୁହେଁ ’ ଆଉ ଠାଏ ଲେଖିଅଛନ୍ତି — “ ଯଦି ବାଳିକାର ବିବାହ ହେଉଥାନ୍ତା, ତେବେ ଏହି ବ୍ରହ୍ମଚର୍ଯ୍ୟ ବିଧାନର ଆବଶ୍ୟକତା ନଥିଲା”
ଏହି ଉକ୍ତିମାନଙ୍କରୁ ବାଳିକାବିବାହ ଅବୈଦିକ ଶାସ୍ତ୍ର ସଂଗତ ନୁହେ ବୋଲି ସେ ନିଜ ମତ ପ୍ରକାଶ କରିଅଛନ୍ତି । ଇତିପୂର୍ବେ ତାଙ୍କ ଲେଖାରେ କେତେକ ସ୍ଥାନ ଉଦ୍ଧାର କରି ଦେଖାଇଅଛୁ ଯେ ତାଙ୍କର ମତରେ ବାଳିକାବିବାହ ଶାସ୍ତ୍ରସଂଗତ ବୋଲି ସେଥି-ରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ । କି ଆଶ୍ଚର୍ଯ୍ୟ କଥା, ସେ ନିଜେ କେଉଁଠାରେ କହନ୍ତି ବାଳିକା-ବିବାହ ଶାସ୍ତ୍ରସଂଗତ, ଆଉ କେଉଁଠାରେ କହନ୍ତି ବାଳିକାବିବାହ ଏକାନ୍ତ ଅକର୍ତ୍ତବ୍ୟ ।

ବୋଲି ଶାସ୍ତ୍ରର ମତ । ପାଠକେ! ବୋଧହୁଏ ପଣ୍ଡିତେ ଶାସ୍ତ୍ରର ପୂର୍ବାପର ସଂଗତ ସନ୍ଦର୍ଭ ଠିକ୍ ନ କରି ସାଗରୁ ପଦେ ମୁଗରୁ ପଦେ ଉଦ୍ଧାର କରି ଯୁବତୀ ବିବାହ ଶାସ୍ତ୍ର ସିଦ୍ଧ ବୋଲି ପ୍ରୟାସ କରିବାକୁ ସାହାସୀ ହୋଇଅଛନ୍ତି ।

ତାପରେ ସେ ଲେଖିଅଛନ୍ତି- " ଅନେକେ ବ୍ରହ୍ମଚର୍ଯ୍ୟ ପଦରେ ଅଷ୍ଟପ୍ରକାର ବ୍ରହ୍ମଚର୍ଯ୍ୟମଧ୍ୟରୁ ଦର୍ଶନ ସ୍ପର୍ଶନ ଇତ୍ୟାଦି ବ୍ରହ୍ମଚର୍ଯ୍ୟପଦରେ କେବଳ ମୈଥୁନ ଗ୍ରହଣ କରିବାକୁ ହେବ । ଅନ୍ୟାନ୍ୟ ଦର୍ଶନ ସ୍ପର୍ଶନ ଇତ୍ୟାଦି ପୁଣି ସେହି ସେହି ଗୃହ୍ୟସୂତ୍ରରେ ବା ସ୍ମୃତିରେ ବିହିତ ହୋଇଅଛି । ତାପରେ ସମ୍ଭୋଗ ବୋଲି ନାହିଁ ସ୍ପଷ୍ଟ ଲେଖାଅଛି " ଏହି ଉକ୍ତି ଦ୍ୱାରା ଦର୍ଶନ ସ୍ପର୍ଶନାଦି ବ୍ରହ୍ମଚର୍ଯ୍ୟ ମଧ୍ୟରେ କର୍ତ୍ତବ୍ୟ ବୋଲି, ଉକ୍ତ ହୋଇଥିବାରୁ ଦର୍ଶନ ସ୍ପର୍ଶନ ନିଷେଧ ଉକ୍ତ ବିବାହ ବ୍ରହ୍ମଚର୍ଯ୍ୟର ଲକ୍ଷ୍ୟ ନୁହେଁ କେବଳ ସମ୍ଭୋଗ ମାତ୍ର ଲକ୍ଷ୍ୟ ବୋଲି କାରଣ ଦର୍ଶାଇ ବାଳିକା ବିବାହର ଅଶାସ୍ତ୍ରୀୟତା ପ୍ରତିପାଦନ କରିଅଛନ୍ତି । ଏହା ବଡ଼ ଆଶ୍ଚର୍ଯ୍ୟ । ବିଧିବିହିତ ଯେଉଁ ଦର୍ଶନ ସ୍ପର୍ଶନ ତାହା ବ୍ରହ୍ମଚର୍ଯ୍ୟର ଭଙ୍ଗକାରକ ହେବ ନାହିଁ । ଯେପରି ବିଧିବିହିତ ହିଂସା ହିଂସା ମଧ୍ୟରେ ଗଣ ନୁହେଁ । ଏହା ଶାସ୍ତ୍ର ପ୍ରତିପାଦିତ, ଲୋକରେ ଦୁଷ୍ଟ ପ୍ରାଣଦଣ୍ଡରେ ଦଣ୍ଡନୀୟ ବ୍ୟକ୍ତିର ପ୍ରାଣଦଣ୍ଡ ବିଧାନ ଦ୍ୱାରା କେହି ନରହତ୍ୟାରେ ଲିପ୍ତ ହୁଅନ୍ତି ନାହିଁ । ଏହା ସର୍ବସାଧାରଣଙ୍କ ବିଦିତ । ସେପରି ବିଧି ବିହିତ କାର୍ଯ୍ୟ କଦାପି ଦୋଷାବହ ନୁହେଁ । ସୁତରାଂ ବିଧିବିହିତ ଦର୍ଶନାଦିରେ ଉକ୍ତ ବିବାହ ବ୍ରହ୍ମଚର୍ଯ୍ୟର ଭଙ୍ଗ ହେବ ନାହିଁ । ସେହି ବିଧିବିହିତ ଦର୍ଶନାଦି ଭିନ୍ନ ଯେଉଁ ଅନୁଷ୍ଠାନ ବ୍ରହ୍ମଚର୍ଯ୍ୟ ଅବସ୍ଥାରେ ନିଷିଦ୍ଧ ତାହା ଅକର୍ତ୍ତବ୍ୟ । ଯାହା ବିଧିବିହିତ ତାହା ପାଳନୀୟ । ତହିଁରେ କଦାପି ବ୍ରହ୍ମଚର୍ଯ୍ୟର କ୍ଷତି ହୁଏ ନାହିଁ । ଅର୍ଥାତ୍ ଉକ୍ତ ବିବାହ ବ୍ରହ୍ମଚର୍ଯ୍ୟରେ ବିଧିବିହିତ ଦର୍ଶନ ସ୍ପର୍ଶନ ଭିନ୍ନ ସ୍ୱେଚ୍ଛା ବଶବର୍ତ୍ତୀ ଭାବେ ଦର୍ଶନ ସ୍ପର୍ଶନାଦି ନିଷିଦ୍ଧ । ଚତୁର୍ଥ ରାତ୍ରରେ ସେହି ନିଷିଦ୍ଧ ଦର୍ଶନ ସ୍ପର୍ଶନାଦି କର୍ମରଭଙ୍ଗ କର୍ତ୍ତବ୍ୟ । ସେଥିଦ୍ୱାରା ବିବାହ ବ୍ରହ୍ମଚର୍ଯ୍ୟ ଭଙ୍ଗ ହୋଇଯାଏ । କେବଳ ପାଶବିକ ମୈଥୁନ କଲେ ଯେ ଉକ୍ତ ବ୍ରହ୍ମଚର୍ଯ୍ୟ ଭଙ୍ଗ ହେବ ତାହା ନୁହେଁ । ଯେପରି ଏକାଦଶୀ ବ୍ରତ କରିଥିବା ବ୍ୟକ୍ତି ଦ୍ୱାଦଶୀରେ ପାରଣା କରିବ ବୋଲି ଶାସ୍ତ୍ରରେ ଦେଖାଯାଏ । ସେହି ପାରଣ ବିଧିରେ ଯେ କ୍ଷୀର ଖେଚଡ଼ି ଆଦି ଚତୁର୍ବିଧ ଅନ୍ନରେ କେବଳ କରିବାକୁ ହେବ ତାହା ନୁହେଁ । ଚରଣାମୃତ ଟୋପାକରେ ମଧ୍ୟ ହୋଇପାରେ । କୌଣସି ବିଶେଷ ନିଷେଧ ନଥିଲେ କ୍ଷୀର ଖେଚଡ଼ି ପ୍ରଭୃତିରେ ସୁଦ୍ଧା ହୋଇପାରେ । ଆଉ ଗୋଟିଏ ଉଦାହରଣ ଦେଖନ୍ତୁ । ଆମ୍ଭର ଶାସ୍ତ୍ରରେ ପୟୋବ୍ରତ ନାମରେ ଗୋଟିଏ ବ୍ରତ ଅଛି । ସେହି ବ୍ରତରେ ବ୍ରତୀ ହେଲେ

କ୍ଷୀରପାନ ଭିନ୍ନ ଆଉ କିଛିଭୋଜନ କରାଯାଏନାହିଁ । ଏହାବୋଲି ପେଟେ କ୍ଷୀର ପିଇ ବ୍ରତକରିବାକୁ ହେବବୋଲି ଅର୍ଥ ଗ୍ରହଣ କରିବା ଅସଂଗତ କୁହେଁକି ? ସେହି ବ୍ରତବିଧିରେ ଯେତେ ସମୟ ଶରେ ପିଇବା କର୍ତ୍ତବ୍ୟବୋଲି କହିଛନ୍ତି, ସେଥିରୁ ଅଧିକ ପାନ ନିଷିଦ୍ଧ । ସେପରି ଚତୁର୍ଥୀଦିନରେ ( କେତେଖଣ୍ଡ ଗୃହ୍ୟସୂତ୍ରରେ ) ସମ୍ଭୋଗ କର୍ତ୍ତବ୍ୟବୋଲି ଲେଖା ଅଛି । ଏହାବୋଲି ପାଣିବଳ ସମ୍ଭୋଗକରିବା କେତେ ଅ- ସଂଗତ । ବିବାହିତା ସ୍ତ୍ରୀ ସଙ୍ଗରେ ସମ୍ଭୋଗର ଅନୁମତି ବାହାରିଲେ ତାହା ଅକର୍ତ୍ତବ୍ୟ । ସେହି ସଂଭୋଗର ଉଦ୍ଦେଶ୍ୟ ଏହି ଯେ- ଯେଉଁ ବିଧିରେ ବ୍ରହ୍ମଚର୍ଯ୍ୟବ୍ରତ କରାଯାଇଥିଲା ସେଥିର ଉଦ୍‌ଯାପନମାତ୍ର, ନୋ କୌଣସିମତେ ବ୍ରହ୍ମଚର୍ଯ୍ୟ ଭଂଗ ହେଲେ ସମ୍ଭୋଗ ସମ୍ପନ୍ନହେଲା । ଅତଏବ ଚତୁର୍ଥୀଦିନରେ ବ୍ରହ୍ମଚର୍ଯ୍ୟ ଭଂଗପାଇଁ ପାଣିବଳ ସମ୍ଭୋଗ ଅନାବଶ୍ୟକ । କୌଣସି ଗୃହ୍ୟସୂତ୍ରରେ ପାଣିବଳ ସମ୍ଭୋଗର କର୍ତ୍ତବ୍ୟତା ଉଲ୍ଲେ- ଖ ହୋଇନାହିଁ । ଅଶ୍ଳୀଳତା ହେତୁରୁ ଶାସ୍ତ୍ରକାରମାନେ ସଂଯୋଗ ଲେଖିନାହାନ୍ତି ବୋଲି କେହି ଆଶଙ୍କା କରିପାରନ୍ତି । ସେଥିର ଉତ୍ତରରେ କହୁଅଛୁ ଯେ ଗୃହ୍ୟ- ସୂତ୍ରରେ ଋତୁସମୟରେ ସ୍ତ୍ରୀର ଯୋନି ପ୍ରବେଶ ମନ୍ତ୍ରପାଠ ପୂର୍ବକ ଗର୍ଭାଧାନ କଥା ଲେଖା ଅଛି ... ସଂଯୋଗ ଠାରୁ ପାଣିବଳ ସମ୍ଭୋଗ ଅଧିକ ଅଶ୍ଳୀଳ ନୁହେଁ । ଅତଏବ ସ୍ପଷ୍ଟ ଜଣାଯାଏ ଗୃହ୍ୟକାରଙ୍କ ମତରେ ପାଣିବଳ ସମ୍ଭୋଗ ଚତୁର୍ଥୀକର୍ମର ଉଦ୍ଦେଶ୍ୟ ନୁହେଁ । ଅମର ନିଜେ ମଣି ପଣ୍ଡିତେ ଏହି ନିବନ୍ଧରେ ସମ୍ଭୋଗପ- ଦରେ ପାଣିବଳ ସମ୍ଭୋଗାର୍ଥ ପ୍ରକାଶକରି ନିଜମତରେ ସମର୍ଥନାର୍ଥ ଚେଷ୍ଟାକରୁ- ଅଛନ୍ତି ।

" ଚତୁର୍ଥ ଦିବସରେ କନ୍ୟାକୁ ଧର୍ମଶୀଳ ଉପରେ ବସାଇଥାଏ " ଟୀକାରେ ଏହି ଧର୍ମଶୀଳ କିପରି, କେଉଁଠାରୁ ଆସିଲେ କେଜାଣି ।

ପରେ ସେ ନାନାଶାସ୍ତ୍ରଙ୍କୁ କଟାକ୍ଷକରି ଯାହା କଦର୍ଯ୍ୟଭାବର ସୂଚନା କରୁଅଛନ୍ତି ତାହାଦ୍ୱାରା ତାଙ୍କର ଚପଳତା ଆତ୍ମଶ୍ଳାଘା ମାତ୍ର ।

" ଦଶବର୍ଷ ପ୍ରାପ୍ତ ବିବାହ କୌଣସି ଶାସ୍ତ୍ରରେ ନିଷେଧ ନୁହେଁ " ଏହାସବୁ ଆଶଙ୍କା ସମାଧାନ ପୂର୍ବକ ବାଳିକା ବିବାହର ଯେଉଁ ପ୍ରତିଷେଧରେ ଲେଖି- ଥିବାରୁ ବୋଧହୁଏ ଯୁବତୀ ବିବାହ ଶାସ୍ତ୍ରୀୟବୋଲି ନିଜର ଆନ୍ତରିକ ଆଶଙ୍କାର ପରିଚୟ ଦେଇଅଛନ୍ତି ।

ଜାତୁକର୍ଣ୍ଣ ଦଶରାତ୍ର ଦୈବିକ ଅଶୌଚରେ ସେ ସବୁ ଦ୍ରବ୍ୟକୁ ଆସ୍ଥିର ବ୍ୟବହାର ଅଦର୍ଶବୋଲି କହୁଅଛନ୍ତି । ଏହା କିପରି କଥା ପାଠକେ ବିଚାରକରନ୍ତୁ । ସାହି-

ତ୍ୟରେ ରସପୁଷ୍ଟିର ସାଧନପାଇଁ କବିଗଣ କଳ୍ପନାସୌଧତଳରେ ଯେଉଁ ନାୟକ ନାୟିକାଙ୍କୁ ସଜାଇ ଚରିତ୍ରଚିତ୍ରଣବାର ନିପୁଣ ବର୍ଣ୍ଣନ କରିଅଛନ୍ତି । ଆଚାର ବ୍ୟବହାରରୁ ଠିକ୍ ଏ ସ୍ଖଳନ ନଥିଲେ ଲୋକରଞ୍ଜନ କଦାପି ସମ୍ଭବପର ହୋଇନପାରେ । କେବଳ ଶୁଷ୍କ ନୀତିବାକ୍ୟ ସାହିତ୍ୟ ମଧ୍ୟରେ ଜନମନୋରଞ୍ଜନ ବିଷୟରେ ଅସମର୍ଥ । ଏପରିସ୍ଥଳେ ସାହିତ୍ୟଗୁଡ଼ିକରେ ପ୍ରାଚୀନାଙ୍କର ପରମ୍ପରା ପଦଉଦ୍ଭାବକ ସିଦ୍ଧ, ତେବେ ସନାତନଧର୍ମମୂଳକ ଆଚାର ବ୍ୟବହାରର ଆଦର୍ଶଭୂତ ଧର୍ମଶାସ୍ତ୍ରଗୁଡ଼ିକର ପ୍ରଣୟନ ପ୍ରୟାସ ସ୍ୱୀକାର କରିବାର କି ଆବଶ୍ୟକ ଥିଲା? ତଥାପି କବିକୃତ ପଦ୍ୟ-ସାହିତ୍ୟ ଆଗ୍ରହପ୍ରଦ, ଧର୍ମଶାସ୍ତ୍ର ମୁଖ୍ୟ ପ୍ରମାଣ । ତାହେଲେ ଗୁରୁପତ୍ନୀହରଣ, ମାତୃହରଣ, ଭ୍ରାତୃଜାୟାହରଣ, ପରସ୍ତ୍ରୀହରଣ, କନ୍ୟାହରଣ ପ୍ରଭୃତି ଅସଂଖ୍ୟ ପାପାଚରଣକଥା ଲୋକରଞ୍ଜନାର୍ଥ ସାହିତ୍ୟମାନଙ୍କରେ ବିଚିତ୍ରରୂପେ ବର୍ଣ୍ଣିତ ହୋଇଅଛି । ସେଗୁଡ଼ିକ ସୁଦ୍ଧା ତାଙ୍କ ମତରେ ଆଚରଣ କରିବାକୁ ହେବ ପରା ?

ପାଠକେ! ଲୋକରଞ୍ଜନାର୍ଥ ବିବିଧ କଳ୍ପନା କଳ୍ପିତପୂର୍ଣ୍ଣ ସାହିତ୍ୟ କି ସନାତନ ଧର୍ମଶାସ୍ତ୍ର ସହିତ ସମାନ ପ୍ରମାଣରୂପେ କଦାପି ପୂଜିତ ହୋଇପାରେ? ଏହା କୁଞ୍ଜବନ ମିଶ୍ର ଓ ପୂଜାରିଙ୍କ ହାସ୍ୟଜନକ ବାଳ୍ୟାପ ନାମ୍ୟାଦମାତ୍ର ।

କାଳିଦାସ ଭବଭୂତି ପ୍ରଭୃତିଙ୍କ ସାହିତ୍ୟରେ ଯୁବତୀବିବାହର ପ୍ରଥା ଥିବାର ପଣ୍ଡିତେ ଲେଖି ମାଳତୀମାଧବ ଦୃଷ୍ଟାନ୍ତ ଦେଉଅଛନ୍ତି । ବେଶ—କାଳିଦାସଙ୍କ କେଉଁ କାବ୍ୟରେ ବ୍ରାହ୍ମଣ ପୁତ୍ର ଯୁବତୀକନ୍ୟା ବିବାହର ପ୍ରଥା ମିଳେ? ମାଳତୀ ମାଧବ ଦୃଷ୍ଟାନ୍ତ ସୁଦ୍ଧା ନିତାନ୍ତ ଅସମ୍ଭବ । କାରଣ ମାଳତୀମାଧବର ବିବାହ ବିଧି ପ୍ରଣୟ ବିବାହ କୁହେ; ନବ୍ୟ ଗାନ୍ଧର୍ବବିବାହମାତ୍ର । ଏଥିଦ୍ୱାରା ଯୁବତୀବିବାହ ସମର୍ଥନ ପ୍ରୟାସବୃଥା । ସନ୍ଦେହନାହିଁ ।

ଯେଉଁ ଇତିହାସର ସତ୍ୟତା ଏପର୍ଯ୍ୟନ୍ତ ଅମୂଳକ ହୋଇ ପଡ଼ିଛି ସେହି ଇତିହାସ ଚର୍ଚ୍ଚା କରିବାକୁ ଯାଇ କେତେକ କାହାକୁ ପଞ୍ଚମଶତାବ୍ଦୀରେ କାହାକୁ ଷଷ୍ଠଶତାବ୍ଦୀରେ କାହାକୁ ବା ଅଷ୍ଟମ ଓ ଦଶମ ଶତାବ୍ଦୀରେ ସ୍ଥାନଦେଇ ସ୍ଥିରସିଦ୍ଧାନ୍ତରେ ଯୁବତୀ-ବିବାହ ସମର୍ଥନର ଗୁରୁତର ପ୍ରୟାସ କରୁଅଛନ୍ତି । କି ଆଶ୍ଚର୍ଯ୍ୟର କଥା ।

ଜନ୍ମଭୂମି ତା: ୨୨ ଖ ଦୈନିକ ଅଙ୍କରେ ସେ ଲେଖିଅଛନ୍ତି " ହଳଧର ଓ ଗଦାଧର ଆଦି ଅନେକ ବାଳିକାବିବାହପକ୍ଷରେ ପ୍ରଥମ ରଜୋଦର୍ଶନରେ ଦୋଷାଦୋଷ ଓ ନିଷେକକର୍ମର ଉଲ୍ଲେଖ କରିଅଛନ୍ତି, କିନ୍ତୁ ଯୁବତୀ ବିବାହର ନିଷେଧ କରିନାହାନ୍ତି । ସୁତରାଂ ପାରସ୍କରଙ୍କ ମତରେ ଯୁବତୀବିବାହ କରଣୀୟ । ବ୍ୟାଖ୍ୟାତା

ମାନେ ତାହା ଅସ୍ୱୀକାର କରନାହାନ୍ତି" ପାଠକେ! ବ୍ୟାଖ୍ୟାକାରମାନେ ମୂଳଗ୍ରନ୍ଥର ପୂର୍ବାପର ସଂଗତ ସନ୍ଦର୍ଭ ଠିକ କରି ଭାଷ୍ୟ ଲେଖିଅଛନ୍ତି । ତାଙ୍କ ଲେଖା ମଧ୍ୟରେ ପ୍ରଥମରଜୋଦର୍ଶନରେ ଦୋଷାଦୋଷ ପ୍ରଭୃତି ବାଳିକାବିବାହର ସମର୍ଥନ ସୁବ୍ୟକ୍ତ । ଏପରିସ୍ଥଳେ ସେ କହନ୍ତି ଯୁବତୀବିବାହର ନିଷେଧ ଦେଖାଯାଉନଥିବାରୁ ଯୁବତୀବିବାହ ଭାଷ୍ୟକାର ଓ ଗୃହ୍ୟକାରଙ୍କର ସମ୍ମତ । ଆଉ ବାଳିକାବିବାହ ଅସଂମତ । ଏହା ଅତି ଆଶ୍ଚର୍ଯ୍ୟର ବିଷୟ । ଏପରି ଲେଖାର ମୂଲ୍ୟ ପାଠକେ ସ୍ଥିର କରିବେ ।

ପଣ୍ଡିତଙ୍କ ଲେଖାରୁ ଜଣାଯାଏ ଯେ ହରିହର ଓ ଗଦାଧର ଭାଷ୍ୟକାରଦ୍ୱୟ ବାଳିକାବିବାହ ସ୍ୱୀକାର କରିଅଛନ୍ତି । ଅନ୍ୟ ଭାଷ୍ୟକାରଙ୍କ ଅଭିପ୍ରାୟ ଦେଖାଯାଉ । କର୍କଭାଷ୍ୟାରମ୍ଭରୁ ପୃ ୧୧୮ ଷ୍ଠାର ଧା ୯ ରେ " ଉପହାସ ଶବ୍ଦେନ ଗୃହ୍ୟକର୍ମୋଦ ଭିଧୀୟତେ " ଉପହାସକୁ ଅଭିଗମନ କହନ୍ତି । ଏହା ଅର୍ଥ । ( ୧୧ ଧାଡିରେ ) " ପ୍ରବେଶନଂ ଅଭିଗମନଂ କୁର୍ଯ୍ୟାତ " ଅର୍ଥ - ଯଥର୍ତ୍ତୁ ପ୍ରବେଶନଂ ସୂତ୍ରରେ ଥିବା ପ୍ରବେଶନ ଶବ୍ଦର ଅର୍ଥ ଅଭିଗମ । ଏଥିରୁ କର୍କଙ୍କ ମତରେ ଅଭିଗମନରେ ପାଣିବୀଜ ସଂଗମ ନୁହେଁ, ଉପହାସ ଆଲିଙ୍ଗନାଦି ମାତ୍ର । ଅତଏବ ବାଳିକା ବିବାହ କର୍କଙ୍କର ଅଭିପ୍ରେତ ବୋଲି ସୁବ୍ୟକ୍ତ ।

ପୃ ୧୯ ଧା ୨୧ ରେ ଜୟରାମ ଲେଖିଛନ୍ତି — " ଉପହାସଂ ଅଭିଗମନଂ କେଚିତ୍ " ଧା ୨୩ ରେ ' ପ୍ରବେଶନଂ ଅଭିଗମଂ କୁର୍ଯ୍ୟାତ୍ " ଉପହାସର ଅର୍ଥ ଅଭିଗମନ, ପ୍ରବେଶନର ଅର୍ଥ ଅଭିଗମନ । ଜୟରାମଙ୍କ ମତରେ ଯଥର୍ତ୍ତୁ ପ୍ରବେଶ ସ୍ଥଳେ ପ୍ରବେଶନ ପଦରେ ଉପହାସାଲିଙ୍ଗନାଦି ଉକ୍ତ ଅଛି । ପାଣି ବୀଜସଂସର୍ଗ ନୁହେଁ । ପାଠକେ! ବିଚାର କରନ୍ତୁ. ପୃ ୧୨୦ ଧା ୨୮ ରେ ବିଶ୍ୱନାଥ ଲେଖିଛନ୍ତି — " ଇତି ଚତୁର୍ଥୀକର୍ମ " ଅର୍ଥ — ଏଠାରେ ଚତୁର୍ଥୀକର୍ମ ଶେଷ ହେଲା । ଧା ୩୦ ରେ " ଅଭିଗମନମାହ ". ଅର୍ଥ — ଅଭିଗମନବିଧି ପ୍ରାରମ୍ଭ ହେଲା । ଏଥିରୁ ଯଥର୍ତ୍ତୁ ପ୍ରବେଶନଂ ସୂତ୍ରର ବ୍ୟାଖ୍ୟାନ ଲେଖା ଅଛି, ବିଶ୍ୱନାଥ ଉକ୍ତିରୁ ଚତୁର୍ଥୀ ରାତ୍ରରେ ଜୟରାମଙ୍କ ମତରେ ଅଭିଗମନ ଅଭିପ୍ରେତ ନୁହେ । ପ୍ରଥମରଜୋଦର୍ଶନପରେ ଅଭିଗମନବିଧି ଉକ୍ତ ଅଛି । ପାଠକେ! ଏବେ ହରିହର ଗଦାଧର କର୍କ ଜୟରାମ ଓ ବିଶ୍ୱନାଥ ଏହି ପାଞ୍ଚ ଭାଷ୍ୟକାରଙ୍କ ମତରେ ଯୁବତୀବିବାହର ସତ୍ତା କେଉଁଠାରେ ? ସେମାନଙ୍କର ବାଳିକାବିବାହ ବା କିପରି ଅଭିପ୍ରେତ ନୁହେଁ; ପଣ୍ଡିତଙ୍କ ପଙ୍କ୍ତିରନ୍ତୁ ।

" ତାମୁଦ୍ବହ୍ୟ ଯଥର୍ତ୍ତୁ ପ୍ରବେଶନଂ " ଉଦ୍ଧୃତ୍ୟପଦରେ ଯେଉଁ ଲ୍ୟପ୍ ପ୍ରତ୍ୟୟତା-ର ଅର୍ଥ ଆନନ୍ତର୍ଯ୍ୟ । ସେହି ଅନନ୍ତର୍ଯ୍ୟଯେ କେବଳ ଅବ୍ୟବହିତ ଉତ୍ତର କ୍ଷଣ-ବୋଧକହେବ ତାହାନୁହେଁ । ତାହାହେଲେ ତାଙ୍କ ମତାନୁସାରେ ଚତୁର୍ଥୀକର୍ମ କରାଯିବାସ୍ଥଳରେ ମାତ୍ର ସମ୍ଭୋଗ କର୍ତ୍ତବ୍ୟହେବ । ରହସ୍ୟମନ୍ଦିର ପର୍ଯ୍ୟନ୍ତ ଯିବାକୁ ଅବସର ରହିବନାହିଁ । ପାଠକେ! ଭାବନ୍ତୁ, " ସୂତ୍ରକାରଙ୍କ ମତରେ ଯୁବତୀ-ବିବାହ ଯେଅଭିମତ, ଏଥିରେ ସଂଦେହନାହିଁ " ପଣ୍ଡିତଙ୍କ ଏହିଲେଖାର ଉଦ୍ଦେ-ଶ୍ୟ ଠକାମିତନୁହେଁ ?

ଆମ୍ଭର ଉଦ୍ଧୃତ ବଚନ ଆମ୍ଭଲେଖାର ୧୬୧ ପୃଷ୍ଠାରେ ପଣ୍ଡିତଙ୍କ ଦେଖାଗ-ଲାନାହିଁ ! ପାଠକେ! ପଣ୍ଡିତଙ୍କୁ ଅନୁରୋଧ କରନ୍ତୁ — ବମ୍ବଇ, ମଣିଲାଲ ଇଚ୍ଛା ରାମ ଦେଶାଇଙ୍କ " ଗୁଜରାଟ " ମୁଦ୍ରଣାଳୟରେ ପ୍ରକାଶିତ, ଭାଷ୍ୟପଞ୍ଚକାନ୍ୱିତ, ଖ୍ରୀ ୧୯୧୭ ଷ୍ଟାବ୍ଦରେ ମୁଦ୍ରିତ, ପାରସ୍କର ଗୃହ୍ୟସୂତ୍ର ପୁସ୍ତକର ପୃ ୧୬୧ ଷ୍ଠାରେ ଧା ୧୭ ଉର ଆରମ୍ଭରୁ ୧୦ ଗୋଟି ଅକ୍ଷର ଉତ୍ତାରୁ ଯେଉଁ ପୂର୍ଣ୍ଣଚ୍ଛେଦଅଛି, ସେଉ-ତ୍ତାରୁ ପଢ଼ିଲେ ଦେଖିପାରିବେ " ଅଥ ଋତୁକାଲେ ରଜୋଦର୍ଶନେ ସଂଜାତେ " ଇତ୍ୟାଦି ଲେଖାଅଛି ।

ପଣ୍ଡିତେ ଜାନୁୟାରୀ ୨୭ ତାରିଖ ଦୈନିକ ଆଶାରେ ଲେଖିଅଛନ୍ତି " ଜୈମିନୀୟ ଗୃହ୍ୟସୂତ୍ରରେ.... ତାଭ୍ୟମନୁ ଜ୍ଞାତୋ " ଇତ୍ୟାଦି ସେହି ସୂତ୍ରର ବ୍ୟାଖ୍ୟାନସ୍ଥଳେ ଉଦ୍ଧାର କରିଅଛନ୍ତି " ଯସ୍ମିନ ବୟସିକନ୍ୟା ସ୍ୱୟମେବ ଲଜ୍ଜୟା ବାସଃ ପରିଦଧାତି ତଦ୍ବୟସ୍କା ,, ଏହାର ଅର୍ଥ ବୁଝାଇବାକୁଯାଇ ପଣ୍ଡିତେ କହନ୍ତି ଜୈମିନୀୟ ଗୃହ୍ୟକାର ଙ୍କ ମତରେ ଅନଗ୍ନିକା ପଦ ପ୍ରଯୁକ୍ତଥିବାରୁ ବାଳିକା ବିବାହ ନିଂଦନୀୟ, ଓ ଯୁବତୀ ବିବାହ ପ୍ରଶସ୍ତ । ଏହି ଅନଗ୍ନିକାପଦର ଅର୍ଥସକାଶେ ପଣ୍ଡିତେ ଯେଉଁ ବ୍ୟାଖ୍ୟା ନାଂଶ ଉଦ୍ଧାରକରିଅଛନ୍ତି , ଯେଥିରଅର୍ଥ ଏହା — କନ୍ୟାଯେଉଁସମୟରେ ଲଜ୍ଜା ବାରଣକରିବାକୁ ବସ୍ତ୍ରପରିଧାନକରେ ସେହିବୟସ୍କକନ୍ୟାକୁ ବିବାହକରିବ । ମୁଁ ପାଠକଙ୍କ ସବିନୟେ ପ୍ରାର୍ଥନାକରେ, ପଣ୍ଡିତଙ୍କୁ ନମ୍ନୋକ୍ତପ୍ରଶ୍ନ କରାଯାଉ — କେଉଁଠାରେ ସ୍ତ୍ରୀ ରଜୋଦର୍ଶନପର୍ଯ୍ୟନ୍ତ ଉଲଗାହୋଇଥାଏ । ବସ୍ତ୍ରପିନ୍ଧେନାହିଁ ? ଆଉ ଏହିବ୍ୟାଖ୍ୟାନାଂଶନେଇଁ ପଣ୍ଡିତେ ଯେଯୁବତୀବିବାହ ସମର୍ଥନକରନ୍ତି ଜୈମିନୀୟ ଗୃହ୍ୟକାରଙ୍କମତେ ଯୁବତୀବିବାହ ମାତ୍ର କର୍ତ୍ତବ୍ୟ ଓ ବାଳିକାବିବାହ ନିଂଦ୍ୟବୋଲି କହନ୍ତି ତାହାକଣ କମ୍ ସାହସରକଥା ? ପାଠକେ ଭାବନେବେ ।

ପଣ୍ଡିତେ " ଜ୍ୟାୟସଃ କନୀୟସୀଂ " ସ୍ଥଳେ ନିଜଅପେକ୍ଷା ନ୍ୟୁନବୟସ୍କାଅର୍ଥ

ଦେଖାଇ ଯେଉଁ ଯୁକ୍ତି ବ୍ୟକ୍ତ କରିଅଛନ୍ତି, ତାହା ଅନିର୍ବଚନୀୟ । ଉକ୍ତସୂତ୍ରାନ୍ତର ତାତ୍ପର୍ଯ୍ୟ ଏହା: "ତ୍ରିଂଶଦ୍ବର୍ଷୋଦ୍ୱହେତ୍" ଇତ୍ୟାଦି ଶାସ୍ତ୍ରାନୁସାରେ ବର ଓ କନ୍ୟାଙ୍କର ଯେଉଁ ବୟସ ନିରୂପଣ କରାଯାଇଅଛି, ତହିଁରେ କନ୍ୟା ଅପେକ୍ଷା ବର ତ୍ରିଗୁଣ ବଡହେବା ଆବଶ୍ୟକ, ଅଥବା ଅଢ଼େଇ ଗୁଣରେ ବଡହେବା ଆବଶ୍ୟକ ବୋଲି ଲେଖାଅଛି । ଏହା ସବୁ ଋଷି ଓ ଗ୍ରନ୍ଥକାରଙ୍କ ସମ୍ମତ । ଅର୍ଥାତ୍ ୩୦ ବର୍ଷ ବୟସ୍କ ବର ଦ୍ୱାଦଶବର୍ଷ ବୟସ୍କାକୁ ବିବାହ କରିବ । କିମ୍ବା ୨୪ ବର୍ଷ ବୟସ୍କ ବର ଆଠବର୍ଷ ବୟସ୍କା କନ୍ୟାକୁ ବିବାହ କରିବ । ଏହି କ୍ରମାନୁସାରେ ବିବାହିତ ବରକୁ ମାତ୍ର ଜ୍ୟାୟାନ୍ । ଆଉ ବିବାହିତା କନ୍ୟାକୁ ମାତ୍ର କନୀୟସୀ କୁହାଯାଏ । କାମସୂତ୍ରରେ ମଧ୍ୟ ଏହା ଦେଖାଯାଏ । ବର ଓ କନ୍ୟାଙ୍କ ବୟସତାରତମ୍ୟ ନିରୂପଣାବସରରେ ବାତ୍ସ୍ୟାୟନ ଶେଷସୀମା ଦେଖାଇଅଛନ୍ତି ଅନ୍ତତଃ ବରର ବୟସ ଅପେକ୍ଷା କନ୍ୟାର ବୟସ ତିନିବର୍ଷ ନ୍ୟୁନହେବା ଅତ୍ୟନ୍ତ ଆବଶ୍ୟକ । ଉକ୍ତ ଗ୍ରନ୍ଥକାରଙ୍କ ମତରେ ପୂର୍ବୋକ୍ତକ୍ରମେ ଜ୍ୟାୟାନ୍ ବର କନୀୟସୀର ଅର୍ଥାତ୍ ବିବାହିତ ବରର ଅପେକ୍ଷା କନ୍ୟାର ବୟସ ତୃତୀୟାଂଶ ବା ଅଢ଼େଇଅଂଶ ହେବା ଆବଶ୍ୟକ ବୋଲି କହିଅଛନ୍ତି ! ତାଦ୍ୱାରା ଉପର୍ଯ୍ୟୁକ୍ତ ଗ୍ରନ୍ଥକାରଙ୍କର ବାଳିକାବିବାହ ମାତ୍ର ଅଭିପ୍ରେତ ଥିବାର ସୁବ୍ୟକ୍ତ । ଅତଏବ ପଣ୍ଡିତଙ୍କର ଅପାର୍ଥକଳ୍ପନା ସାହସଦ୍ୟୋତକ

ପ୍ରକୃତାର୍ଥ :-ଜ୍ୟାୟସଃ—(କନ୍ୟା ଅପେକ୍ଷା) ଅତ୍ୟନ୍ତ ଜ୍ୟେଷ୍ଠ ବର ଅପେକ୍ଷା । କନୀୟସୀଂ—ଅତ୍ୟନ୍ତ କନିଷ୍ଠା ଯେଉଁ କନ୍ୟା ତାହାକୁ । ଏହା ପ୍ରକୃତାର୍ଥ । ପଣ୍ଡିତେ ଆଉଟାଏ ଲେଖିଅଛନ୍ତି—"ତ୍ରିରାତ୍ରମକ୍ଷାରଲବଣାଶିନୌ । ବ୍ରହ୍ମଚାରିଣାବଧଃ ସମ୍ବେଶିନାବସମ୍ପୃକ୍ତମାନୌ ସହ ଶୟିତାଂ, ଊର୍ଦ୍ଧ୍ୱଂ ତ୍ରିରାତ୍ରାତ ସମ୍ବିଶଃ" । ଅର୍ଥ—"ବିବାହପରେ ବର କନ୍ୟା ତ୍ରିରାତ୍ର ଲବଣ ଓ କଟୁ ନ ଖାଇ ବ୍ରହ୍ମଚାରୀ ହୋଇ ପୃଥିବୀତଳରେ ଏକ ଶଯ୍ୟାରେ ଶୟନ କରିବେ । ପରସ୍ପର ଆଲିଙ୍ଗନ କରିବେ ନାହିଁ । ତିନିରାତ୍ରପରେ ସମ୍ଭୋଗ କରିବେ" ।

ଉକ୍ତସୂତ୍ରରେ ଯେଉଁ ଅର୍ଥ ପଣ୍ଡିତେ ଲେଖିଅଛନ୍ତି ତହିଁରେ ଅନେକ କୌଶଳ ରହିଅଛି । ପାଠକେ ଉକ୍ତସୂତ୍ରର ପ୍ରକୃତାର୍ଥ ଏହା—ବିବାହପରେ ବର ଓ କନ୍ୟା ତିନିରାତ୍ରପର୍ଯ୍ୟନ୍ତ ଲବଣ ଓ କଟୁଭୋଜନ ତ୍ୟାଗ କରିବେ । ଭୂତଳରେ ଶୟନ କରିବେ । ପରସ୍ପର ପରସ୍ପରକୁ ଆଲିଙ୍ଗନ କରିବେ ନାହିଁ । ଏକତ୍ର ଶୟନ କରିବେ । ତିନିରାତ୍ର ପରେ ଉକ୍ତ ଆଚରଣର ବିପରୀତ ଆଚରଣ କରିପାରିବେ । ତାତ୍ପର୍ଯ୍ୟ ଏହିଯେ, ତିନିରାତ୍ର ବ୍ରହ୍ମଚର୍ଯ୍ୟ ବ୍ରତରେ ଯାହା କର୍ତ୍ତବ୍ୟ, ପରେ ସେହି ନିୟମ

ଲଙ୍ଘନୀୟ । ଏହିତାତ୍ପର୍ଯ୍ୟ ମିଶ୍ରୋପଯୋଗକରି ବିବିଧକୌଶଳରେ ଜନଚକ୍ଷୁରେ ଧୂଳି ଦେବାଠାରୁ ଏଥିର ଯଥାର୍ଥ ଅର୍ଥପ୍ରକାଶ କରିନଥିଲେ ବଡ଼ସୁଂଦରହୋଇଥାନ୍ତା ।

ଭରଦ୍ୱାଜଗୃହ୍ୟସୂତ୍ରନାମରେ ପଣ୍ଡିତେ କେତୋଟି ଶ୍ଲୋକ ଉଦ୍ଧାରକରିଅଛନ୍ତି — " ଯସ୍ୟାଂମନୋଽନୁରମତେ ଚକ୍ଷୁଶ୍ଚ ପ୍ରତିପଦ୍ୟତେ । ତାଂ ବିନ୍ଦ୍ୟାତ୍ ପୁଣ୍ୟଲକ୍ଷ୍ମୀକାଂ କିଂ ଜ୍ଞାନେନ କରିଷ୍ୟତି । " ଏହାରଅର୍ଥ ଲେଖିଛନ୍ତି " ଯାହାଠାରେ ମନ ଅନୁରକ୍ତହେବ, ଚକ୍ଷୁ ଆକୃଷ୍ଟହେବ ସେ ହେଉଛିପୁଣ୍ୟଲକ୍ଷଣଯୁକ୍ତା, ତାକୁବିବାହ କରିବ; ଜ୍ଞାନଦ୍ୱାରା କିଛି ଯାଏ ଆସେନାହିଁ,, ଏଥିରୁଯୁବତୀବିବାହର ସୂଚନାମିଳୁଥିବାର ପଣ୍ଡିତେ ବ୍ୟକ୍ତ କରିଅଛନ୍ତି ପାଠକେ! ଆମ୍ଭେକିନ୍ତୁ ଏଥିରୁ କୁଳଟାବିବାହ ଓ ବେଶ୍ୟାବିବାହ ସୁଦ୍ଧା ପ୍ରତିପନ୍ନହୁଏ, ଏଭଳି ଅପବିତ୍ର ବିବାହ ଅର୍ଥାତ୍ ପାଶବିକ ସମ୍ଭୋଗ ଇଚ୍ଛା ଚରିତାର୍ଥ ପାଇଁ ପ୍ରତ୍ୟହ ସହସ୍ର ୨ ଘଟେ । କିନ୍ତୁ ଆଜିକାଲି ତାହା ବିବାହନାମରେ ନାମିତକରୁନାହିଁ । ଏହା ଆମ୍ଭମତରେ ମଧ୍ୟ ପବିତ୍ରବାଳିକାଙ୍କପକ୍ଷରେ ସମ୍ଭବପରନୁହେଁ ' କୁଳଟା ବୃତ୍ତିବା ବେଶ୍ୟାବୃତ୍ତିଙ୍କ ଆଦର୍ଶ ରଖି ପବିତ୍ରହିନ୍ଦୁଜାତ୍ୟରେ ଧର୍ମଶାସ୍ତ୍ରବିଗର୍ହିତ ବ୍ରାହ୍ମଣଯୁବତୀବିବାହର ଶାସ୍ତ୍ରସମ୍ମତଭାବ ପରଦର୍ଶନପ୍ରୟାସୀ ପଣ୍ଡିତେ ପାଠକଙ୍କୁ ପ୍ରତାରଣାକରନ୍ତୁନାହିଁ ପରା ?

ଅଉଠାଏ ସେ ଲେଖିଅଛନ୍ତି " କେବଳ ପୁତ୍ର ଉତ୍ପତ୍ତି ସ୍ତ୍ରୀ ବିବାହର ପ୍ରଧାନ ଉଦ୍ଦେଶ୍ୟ । ସେହିପୁତ୍ର ଉତ୍ପତ୍ତିର ଉତ୍ତମଲକ୍ଷଣ ଯାହାଠାରେ ଅଛି ଏବଂ ଯେ ଉତ୍ତମପୁତ୍ର ଜାତକରିପାରିବ, ତାକୁବିବାହକରିବ । ଏହିବାକ୍ୟମାନଙ୍କରୁ ମଧ୍ୟ ଯୁବତୀବିବାହରହିଁ ସୂଚନାମିଳେ " ଉକ୍ତବାକ୍ୟରୁ ଯୁବତୀବିବାହର ସୂଚନାକିପରି ପଣ୍ଡିତଙ୍କୁ ଏତେ ଅନାୟାସରେ ମିଳିଗଲା । ବାଳିକାବିବାହର ସୂଚନା ମିଳିପାରିଲା ନାହିଁ ? ବୋଧହୁଏ ଦାଣ୍ଡରେ ହାଟରେ ବାଟରେ କଥାବାର୍ତ୍ତା କରି ଯାତାୟାତ କରୁଥିବା ବ୍ୟକ୍ତିଙ୍କର ଯେକୌଣସି ଆଳାପ ଶୁଣିବାମାତ୍ରେ ପଣ୍ଡିତଙ୍କ ମନମଧ୍ୟରେ ଯୁବତୀ ବିବାହାର୍ଥ ଜାଗିଉଠିଥିବ । ଅହୋ ପଣ୍ଡିତଙ୍କ ତନ୍ମୟତା !!

ଆଉଠାଏ ସେ " ଅଥାସ୍ୟା ଇତ୍ୟାଦି " ସୂତ୍ର ଲେଖି ଅର୍ଥ — ତାପରେ ସମ୍ଭୋଗାର୍ଥୀ ବର ସମ୍ଭୋଗାର୍ଥିନୀ କନ୍ୟାର ମୁଖସହିତ ମୁଖମିଶାଇ 'ହେ ମୋର ପ୍ରାଣ ତୁମ୍ଭଠାରେ ନ୍ୟସ୍ତକଲି' କହିବ, କନ୍ୟା — ' ତାହାମୁଁ ଗ୍ରହଣକଲି ' ବୋଲି କହନ୍ତେ ବର ହସ୍ତପ୍ରକ୍ଷାଳନକରି ତାର ଯୋନିପ୍ରଦେଶ ' କର ଇତ୍ୟାଦି ମନ୍ତ୍ରରେ ସ୍ପର୍ଶ କରିବ ' ଏହାଦ୍ୱାରା ଯୁବତୀବିବାହହିଁ ଭରଦ୍ୱାଜଙ୍କ ଅଭିମତ ବୋଲି ସ୍ପଷ୍ଟପ୍ରତୀତହେଉଅଛି । " ଏପରି ଲେଖିଥାଆନ୍ତି । ଯେଉଁ ଗୃହ୍ୟସୂତ୍ରରେ ବିଧାନହୋଇଥିବା ସ୍ଥଳେ

ସର୍ବଜନସମକ୍ଷରେ ସ୍ତ୍ରୀର ଯୋନିପ୍ରଦେଶ ମନ୍ତ୍ରପଢ଼ ସ୍ପର୍ଶ କରି ମନ୍ତ୍ରୋଚ୍ଚାରଦେବାକୁ ଲେଖିଅଛନ୍ତି । ସେପାଣିବକ ସମ୍ଭୋଗ କରିବାଲାଗି କଦାପି ଅଶ୍ଳୀଳ ମନେକରିନାହାନ୍ତି ବୋଲି ଅନୁମାନକରିବା ଯୁକ୍ତିସଂଗତ । ସେହିପାଣିବକ ସମ୍ଭୋଗର ଉଲ୍ଲେଖାଅଭାବରୁ ସ୍ପଷ୍ଟ ଅନୁମିତହୁଏ ଭରଦ୍ୱାଜ ଗୃହ୍ୟକାରଙ୍କର ବାଳିକାବିବାହ ମାତ୍ର ଅଭିପ୍ରେତଥିଲା ଏଥିରେ କୌଣସି ସଂଦେହନାହିଁ ।

ତ୍ରିରାତ୍ରବ୍ରହ୍ମଚର୍ଯ୍ୟରେ ଚତୁର୍ଥୀ କର୍ମ ଲେଖିଥିବାରୁ ଦ୍ରାହ୍ୟାୟନଗୃହ୍ୟକାରଙ୍କମତରେ ଯୁବତୀବିବାହ ଅଭିପ୍ରେତଥିବାର ସୂଚନା ପଣ୍ଡିତଙ୍କଲେଖାରେ ସ୍ପଷ୍ଟହୁଏ । ଆମ୍ଭେ କହୁଁ ପଣ୍ଡିତେ ତନ୍ନପୂତା ଲାଭକରିଥିବାରୁ ଏପରି ଅସଂଗତ ଲେଖିଅଛନ୍ତି । କିନ୍ତୁ ଗୃହ୍ୟକାରଙ୍କର ଯୁବତୀବିବାହ କଦାପି ଅଭିପ୍ରେତନୁହେଁ ।

'ଜାନୁୟାରି ୨୪ ତାରିଖରେ ଦୈନିକ ଆଶାରେ ପଣ୍ଡିତେ ଆଶ୍ୱଳାୟନଙ୍କର ଯୁବତୀବିବାହ ପକ୍ଷପାତର କାରଣରୂପେ ବ୍ୟକ୍ତକରିଅଛନ୍ତି ଯେ " ଅତଏବ ଆଠ ପ୍ରକାରବିବାହ ଓ ବିବାହପରେ ତ୍ରିରାତ୍ର ଦ୍ୱାଦଶରାତ୍ର ବା ଏକବର୍ଷ ବ୍ରହ୍ମଚର୍ଯ୍ୟ ବ୍ରତ ନିର୍ଦ୍ଦେଶକରିଅଛନ୍ତି" । ପାଠକେ କୁଆ ବୋବାଇଲେ ବର୍ଷାହେବ, ଏହାନିଶ୍ଚୟ । କାର୍ଯ୍ୟକାରଣଭାବ ଠିକ୍ । ତୁଳନାରେ ଟିକିଏ ବ୍ୟତିକ୍ରମନାହିଁ । ବର୍ଷାହେବା ଦିନତ କୁଆବୋବାଉଥିଲା । ଏକଥା ବିଶ୍ୱାସ କରନ୍ତୁ । ପଣ୍ଡିତଙ୍କ ଉଦାହୃତ କାରଣଠାରୁ ଏକାରଣଟିରେ କାର୍ଯ୍ୟରସମ୍ବନ୍ଧ ଟିକିଏ ବେଶିପରିମାଣରେଅଛି । ପଣ୍ଡିତଙ୍କ କାରଣକାର୍ଯ୍ୟରୁ ଅଦୌ ଛୁଇଁନାହିଁ । ଆଠପ୍ରକାର ବିବାହ ଲେଖାହେଲା ମାତ୍ରେ ବୈଦିକ ମନ୍ତ୍ରୋକ୍ତି ଅନୁସାରେ ଯୁବତୀବିବାହ ସ୍ଥିରହେଉନାହିଁ । ବୈବାହିକ ମନ୍ତ୍ରାନୁସାରେ ଦାନ ଓ ବରାର୍ଚ୍ଚନା କନ୍ୟା ପିତାଦ୍ୱାରାକରାଯିବା ଆବଶ୍ୟକଥିବାରୁ ଅଷ୍ଟବିଧ ବିବାହମଧ୍ୟରୁ ଶେଷୋକ୍ତ ଯୁବତୀବିବାହ ଚତୁଷ୍ଟୟ ବୈଦିକମନ୍ତ୍ରାନୁଗତନୁହେଁ, ପ୍ରଥମାଦି ଚତୁଷ୍ଟୟ ବାଳିକାବିବାହ । ପ୍ରଥମାଦି ବିବାହରେ ମାତ୍ର ତ୍ରିରାତ୍ରାଦି ବ୍ରତ ବିଧି ଉକ୍ତଅଛି । ଗାନ୍ଧର୍ବାଦି ଚତୁଷ୍ଟୟ ଯୁବତୀ ବିବାହରେ ସେବ୍ରତକରାଯାଏନାହିଁ, ପାଠକେ ଏସବୁ ଏପରିଥିବାରୁ ଆମ୍ଭେ ଯେଉଁକାର୍ଯ୍ୟ କାରଣ ସଂଗ୍ରହପୂର୍ବକ ଉଦାହରଣ ଉଦ୍ଧାରକଲୁଁ ତାହାହିଁ ଯଥାର୍ଥ ।

ବାଳିକାର ବୁଦ୍ଧି ଶୀଳ ରୂପ ଜଣାଯିବନାହିଁବୋଲି ପଣ୍ଡିତେ ଯେଉଁମତ ପ୍ରକାଶ କରିଅଛନ୍ତି ତାହାରକିଛି ଭିତ୍ତିନାହିଁ । ଅନୁଭବମାନଙ୍କୁ ତାହାଜଣାଯିବ । ପଣ୍ଡିତେତ ଅନୁଭବୀ ନୁହନ୍ତି ସେ କିପରିଜାଣନ୍ତେ ?

" ପଞ୍ଚପଦୀ ଉଭୟେମିଶି ଅଗ୍ନିପରିଚର୍ଯ୍ୟାଦି କରିବେବୋଲି ବିହିତଅଛି

ସେସମସ୍ତକାର୍ଯ୍ୟ ବାଳିକାପକ୍ଷରେ ସମ୍ଭବପର ହୋଇପାରିବନାହିଁ" । ଏପରିପଣ୍ଡିତେ ଲେଖିଅଛନ୍ତି । ସେମାନଙ୍କର ଯଜ୍ଞମାନରେ ବିବାହିତକନ୍ୟା ବେଳେତ ପତିପତ୍ନୀମିଶି ବାଳିକାବିବାହସ୍ଥଳେ ଅଗ୍ନିପରିଚର୍ଯ୍ୟାକରିବାର ଅନେକଥର ଦେଖିଥିବେ । ଏତେ ଶୀଘ୍ର କିପରି ବିସ୍ମରଣକରିପକାଇଲେ, ବଡ ଆଶ୍ଚର୍ଯ୍ୟରକଥା ।

ଗୃହ୍ୟକାରିକାର ବଚନକୁ ଗୃହ୍ୟକାରଙ୍କର ଉକ୍ତିବୋଲି ଆମ୍ଭେଲେଖିଥିଲୁଁ, ଉକ୍ତକାରିକା ବଚନକୁମାତ୍ର ଲକ୍ଷ୍ୟକରିସିନା 'ଗୃହ୍ୟକାରଙ୍କରନୁହେଁ' ପଣ୍ଡିତେ ଦୋଷଧରିଛନ୍ତି । ଏବେସୁଦ୍ଧା ଆମ୍ଭେ ଗୃହ୍ୟକାରିକା ବଚନକୁ ଗୃହ୍ୟକାର ବଚନ କହୁଅଛୁଁ । ଯଦ୍ୟପି ଗୃହ୍ୟକାରିକାକାର ଓ ଗୃହ୍ୟକାର ଏକନୁହନ୍ତି ତଥାପିଉକ୍ତ କାରିକାରନାମ ଆଶ୍ୱଲାୟନ ଗୃହ୍ୟକାରିକା । ଅତଏବ ଜଣାଯାଏ ଆଶ୍ୱାଲାୟନ ଗୃହ୍ୟସୂତ୍ର କାରିକାରୂପେ ପରିଣତହୋଇଅଛି । ସୁତରାଂ ଆଶ୍ୱଲାୟନ ଗୃହ୍ୟସୂତ୍ରର ବଚନ ଓ ଉକ୍ତ ଗୃହ୍ୟକାରିକାବଚନ ଏକବୋଲି ଆମ୍ଭେକହୁଅଛୁଁ । ପରାଶରଙ୍କ ଭାଗବତକୁ ଜଗନ୍ନାଥଦାସେ ଓଡ଼ିଆରେ ଲେଖିଅଛନ୍ତି । ସେହିଦାସଙ୍କ ବଚନପଦେ ଉଦ୍ଧାରକରି ଭାଗବତ ବଚନବୋଲି କହିବାରେ ଅସଂଗତକଣ ? ଆମ୍ଭେ ଏଭଳି ଦୋଷଦର୍ଶୀନୋହୁଁ । ଆମ୍ଭର ପଣ୍ଡିତଙ୍କର ସେହିଦୋଷଦର୍ଶିତା ଦେଖି ଆମ୍ଭେ ନିତାନ୍ତଲଜ୍ଜିତ ।

ପଣ୍ଡିତେ ସାଂଖ୍ୟାୟନ ଗୃହ୍ୟ ସଂଗ୍ରହକୁ ଯାହାଏ ଉଦ୍ଧାରକରି ଯଥେଷ୍ଟଭାବେ କହିଯାଇଅଛନ୍ତି — ଉକ୍ତଗ୍ରନ୍ଥ ସଂଗ୍ରହକାର ଯୁବତୀବିବାହର ପକ୍ଷପାତୀ ଥିଲେ ବୋଲି ଯେଏଥିପୂର୍ବରୁ କରାଯାଇଥିବା ଖଣ୍ଡନମାନଙ୍କରେ ଏଥିରଖଣ୍ଡନମଧ୍ୟ ହୋଇଯାଇଅଛି । ସୁତରାଂ ପୁନଶ୍ଚ ସେହିକଥାର ଖଣ୍ଡନକରି ପାଠକଙ୍କବିରକ୍ତକରୁନାହୁଁ ।

ଉପସଂହାରରେ ସେ ଅନେକବାଜେ କଥାଲେଖିଅଛନ୍ତି । ତାହାଏଠାରେ ଆଲୋଚ୍ୟନୁହେଁ । ଗୃହ୍ୟସୂତ୍ରଗୁଡ଼ିକର ପ୍ରମାଣତାନେଇ ସେ ଯେରେ ମୋଡ଼ାମୋଡ଼ିକରି ଯେଉଁକଳ କୌଶଳ ଚତୁରୀ ପ୍ରକାଶକରିଅଛନ୍ତି ତାହାର ଜଟିଳତା ଆଲୋଚନାକଲେ ଠିକ୍ ଆତ୍ମପ୍ରଶଂସାମୂଳକବୋଧହୁଏ । ସୁତରାଂଗୃହ୍ୟସୂତ୍ର ଧର୍ମାଚାର ସମ୍ବନ୍ଧରେଯେକେତେଦୂର ପ୍ରମାଣ ତାହାହିଁ ସଂକ୍ଷିପ୍ତଭାବେ ଦୁଇଚାରିଧାଡ଼ିଲେଖିମୋର ବକ୍ତବ୍ୟ ଶେଷକରିବି । ପାଠକେ! ବିରକ୍ତିନହୋଇ ତୁଳନାକରିନେବେ ।

ଶ୍ରୀଯୁକ୍ତ ପଣ୍ଡିତ ସାହିତ୍ୟ ଶିରୋମଣି ମହୋଦୟ ଯେଉଁ ଗୃହ୍ୟସୂତ୍ରମତଲେଖିଅଛନ୍ତି ଅନେକସ୍ଥାନରେ ସେ "ଅପ୍ରତିଷିଦ୍ଧ ମନୁମତଂସ୍ୟାତ୍" ଅର୍ଥ — ଯାହାରପ୍ରତିଷେଧ କରାହୋଇନାହିଁ ସେ ସଂମତ, ଏହିନ୍ୟାୟରେ ଯୁବତୀବିବାହ ପ୍ରାୟ ସମର୍ଥନ

କରିଅଛନ୍ତି । ତାହା କଦାପି ଠିକ୍ ହୋଇନପାରେ । କାରଣଯାହାର ସତ୍ତା ନାହିଁ ତାହାରପ୍ରତିଷେଧ ବା ହେବକାହିଁ ? ଶଶଶୃଂଗନାହିଁ । ଆକାଶ କୁସୁମନାହିଁ ବନ୍ଧ୍ୟା ପୁତ୍ରନାହିଁ । ଏହାଯେ ଜଗତରେ କିଏ ନଜାଣେ ? କିନ୍ତୁ କୌଣସିଠାରେ ଏଗୁଡିକର ନିଷେଧବାକ୍ୟ ଶୁଣାଯାଏନାହିଁ । କାରଣ ଶଶ ଶୃଂଗ, ଆକାଶକୁସୁ-ମ ଓ ବନ୍ଧ୍ୟାପୁତ୍ରର ଜଗତରେ ସତ୍ତା ନାହିଁବୋଲି ସେଗୁଡିକର ନିଷେଧ ଶୁଦ୍ଧାନାହିଁ । ଅର୍ଥାତ୍ ଯେଉଁପଦାର୍ଥର ଅସ୍ତିତ୍ୱଅଛି ତାହାର ପ୍ରତିଷେଧ ଅଛି । ବ୍ରାହ୍ମଣଜାତିରେ ଯୁବତୀବିବାହର ସତ୍ତାନାହିଁ । ସୁତରାଂ ତାହାରପ୍ରତିଷେଧମଧ୍ୟ କୌଣସିଠାରେଲେ-ଖାନାହିଁ । ଅତଏବ ଯୁବତୀବିବାହହେଉଏବୋଲି ସମର୍ଥନ କରିବାଅପେକ୍ଷା ଯୁବତୀ ବିବାହର ନାମଗନ୍ଧ ଶସ୍ତ୍ରୋକ୍ତମର୍ଯ୍ୟାଦା କ୍ରମେଗ୍ରହଣକରିବା ଅନାବଶ୍ୟକଥିଲା ।

ସେସମ୍ବନ୍ଧେ ଗୃହ୍ୟସୂତ୍ରକାରମାନଙ୍କ ସାକ୍ଷୀକରିବାକଥାମଧ୍ୟ ସୁସଂଗତନୁହେଁ, କାରଣ ନିମ୍ନୋକ୍ତ ଦେବଳମହର୍ଷିଙ୍କ ପ୍ରଣୀତ ଶ୍ଳୋକଟି ବିଚାରକରନ୍ତୁ । " ମନ୍ୱାଦ-ୟଃ ପ୍ରତ୍ୟୋକ୍ତାରୋ ଧର୍ମଶାସ୍ତ୍ରସ୍ୟ କୀର୍ତ୍ତିତାଃ । ତତ୍ପ୍ରଯୁକ୍ତ ପ୍ରଯୋକ୍ତାରୋ ଗୃହ୍ୟକା-ରସ୍ତୁମନ୍ତ୍ରତଃ,, ଅର୍ଥ — ମନ୍ୱାଦିମାନେଧର୍ମଶାସ୍ତ୍ରରପ୍ରଣେତା । ଅତଏବ ଗୃହ୍ୟକାର-ମାନେ ମନ୍ତ୍ରରେ (ସୂତ୍ରରୂପେ) ତାହାପ୍ରଣୟନକଲେ । ସୁତରାଂ ସ୍ମୃତ୍ୟୁକ୍ତ ଅନୁଷ୍ଠାନର କ୍ରମ ଓ କଲ୍ପୋପଦେଶକ ଗୃହ୍ୟକାରମାନଙ୍କ ସାକ୍ଷୀକରିବାଅପେକ୍ଷା ସ୍ମୃତିପ୍ରଣେ-ତା ଋଷିମାନଙ୍କ ସାକ୍ଷୀକରିବା ଆବଶ୍ୟକଥିଲା । କିନ୍ତୁ ଏତେବଡଭାର ଗୃହ୍ୟକା-ରଙ୍କସ୍କନ୍ଧରେ ଲଦିଦେବାଟା ନ୍ୟାଯ୍ୟ ସଂଗତବୋଲି ବିବେଚିତ ହେଉନାହିଁ । ସେମାନେ ଯଦି ସ୍ୱେଚ୍ଛାରେ ଗ୍ରନ୍ଥ ପ୍ରଣୟନକରିଥାନ୍ତେ ପରେଚ୍ଛାକ୍ରମେ ଗ୍ରନ୍ଥପ୍ରଣୟ-ନକାର୍ଯ୍ୟରେ ପରିଚାଳିତ ହୋଇନଥାନ୍ତେ ତେବେ ସେମହାଭାର ବହନରଯୋ-ଗ୍ୟ ହୋଇଥାନ୍ତେ । ଆମ୍ଭମାନଙ୍କର ଆଉସେବିଷୟ ଭାବିବାକୁନଥାନ୍ତା । ବର୍ତ୍ତମାନ ସେମାନଙ୍କର କିଦୋଷଦେଖି କେଜାଣି ଶିରୋମଣି ପଣ୍ଡିତ ମହୋଦୟ କୋପବ୍ୟଂ-ଜିତ କୁଟିଳକଟାକ୍ଷରେ ସେମାନଙ୍କ ଏତେବଡ଼ ଭାରବହନକରାଇଲେ ।

ପରିଶେଷରେ ବକ୍ତବ୍ୟଏହି ଯେ — ପ୍ରଥମେ ଲୋକ ଉପଦେଶକତା ଉପାର୍ଜନ କରି ଲୋକୋପଦେଶକହେବା ସ୍ୱାଭାବିକ । ପୂର୍ବଯୁଗରୁ ଦେଖିଆସିଲେ ପ୍ରାଚୀନ ମତାଗ୍ରହୀ ବା ସଂସ୍କାରକ ବୁଦ୍ଧ ଶଙ୍କର ରାମାନୁଜ ଚୈତନ୍ୟ ଓ ରାମକୃଷ୍ଣ ପରମହଂସ ପ୍ରଭୃତି ଶିକ୍ଷକମାନେ ପ୍ରାଚୀନତମ ସୁକଠୋର ଯମନିୟମାଦିବଳରେ ନିଜର ଶିକ୍ଷିତା ଯେତେବେଳେ ଲୋକପ୍ରସାରିତ କରିସାରିଲେ, ସେତେବେଳେ ସେମାନେ ନିଜ ନିଜର ସଂସ୍କାରସମ୍ମାର୍ଜିତ ମତମାର୍ଗରେ ଗମନକରିବାକୁ ସମ୍ମତ ପ୍ରତ୍ୟାଶୀହେଲେ ।

ଅନନ୍ତର ପରୋପଦେଶବ୍ରତରେ ବ୍ରତୀହୋଇ ଭାରତବର୍ଷରେ ଚିର ଯଶସ୍ୱୀହେବେ, ସଂଦେହନାହିଁ । ଏପନ୍ଥା ଅନାଦରକରି ଶିକ୍ଷାଗୁରୁ ପରମ୍ପରାର କଠୋର ନିୟମରେ ଅନୁସରଣ ପରିହରକରିନପାରି, ଅଉଉପଦେଶଯୋଗ୍ୟପନ୍ଥାରେ ଏକକ୍ଷଣସୁଦ୍ଧା ପଥିକହୋଇ ଜଗତରେ ପରିଚୟନଦେଇ, ଭ୍ରମସଂକୁଳ ଅଧଃପତନଯୋଗ୍ୟପନ୍ଥାରେ ପଥିକହେବାପାଇଁ ଲୋକରେ ପରୋପଦେଶ ପାଣ୍ଡିତ୍ୟ ପ୍ରଖ୍ୟାପନକରା ସାହସମାତ୍ର । ଏହା ଜନ୍ମାନ୍ଧବ୍ୟକ୍ତି ପରକୁ ପଥ ପ୍ରଦର୍ଶାଇବାନ୍ୟାୟ । ନିର୍ଦ୍ଧନବ୍ୟକ୍ତି ଧନାଗମୋପାୟ ଆବିଷ୍କାରକରିବା ସଦୃଶ । ଅଜ୍ଞାନ ଜନଙ୍କୁ ଜ୍ଞାନାଞ୍ଜନ ଦେବାତୁଲ୍ୟମାତ୍ର । ନିଜକୁ ଉପଦେଶକରୂପେ ଗଠନକର । ଶିକ୍ଷାଗୁରୁ ପରିଚାଳନରେ ମନକୁ ସୁକଠିନ ନିଜର ଅଗ୍ରର ମାର୍ଗର ଚିରସଞ୍ଚିତ କଲୁଷଦୂରକର । ନବସଂସ୍କୃତ ସୁନ୍ଦରପନ୍ଥାରେ ପଥିକ ହୁଅ । ନିଜେ ପରମାନନ୍ଦ ଭୋଗକର । ସେହି ଆନନ୍ଦବଳରେ ଲୋକ ପ୍ରବାଦ ଉପେକ୍ଷାକର । ଧୈର୍ଯ୍ୟଧର୍ଯ୍ୟକର । ମହାପ୍ରସାଦ ବାଞ୍ଛିଲାପରି ସ୍ୱାର୍ଜିତଶ୍ରେମ ଭଣ୍ଡାରରୁ କଣିକେ କଣିକେ ବିତରଣକର । ଗୁରୁ ଶଙ୍କରଙ୍କ ଗୌରବରେ ଗୌରବହେବ ସଂଦେହନାହିଁ । " ନଳ ନଦେଖି ଶୁଣି ଲଂଗଳା " ନ୍ୟାୟରେ ଏବଂ "ସ୍ୱୟମସିଦ୍ଧଃ କଥମପରାନ୍ ସାଧୟତି" ନ୍ୟାୟରେ ପରୋପଦେଶ ପାଣ୍ଡିତ୍ୟ ପ୍ରକାଶ ବୃଥାପ୍ରୟାସ ଜନକମାତ୍ର ।

(୧) " ଶ୍ରୀନ୍ କୁମାରୀ ତନ୍ ଅପତ୍ୟ ସ୍ୱୟଂଯୁକ୍ତ୍ୟେତା ନିନ୍ଦତେନ ଉତ୍ସୃଜ୍ୟ ପିତ୍ର୍ୟାନଲଂକାରାନ୍ " ଅର୍ଥ — " କୁମାରୀ ଋତୁଯୁକ୍ତ ଅତିକ୍ରମଣପରେ ପିତୃଦତ୍ତ ଅଲଂକାର ତ୍ୟାଗକରି ଉପଯୁକ୍ତବର ବରଣକରିବ " ଏହିସୂତ୍ରରେ ଯୁବତୀବିବାହର ଉଲ୍ଲେଖଥିବା କଥା ଶିରୋମଣିମହୋଦୟ ଜାନୁୟାରୀ ତା ୧୬ ରିଖର ଦୈନିକ—ଆଶାରେ ଲେଖିଅଛନ୍ତି । ଏହା ଅତିଆଶ୍ଚର୍ଯ୍ୟର କଥା । ଉପରୋକ୍ତସୂତ୍ରର ଯେଉଁ ଅର୍ଥ ତାଙ୍କଦ୍ୱାରା ପ୍ରକାଶିତ ତାହା ଠିକ ଏଭଳି ସତ୍ୟ । ତଥାପି ତାହାହିଁ ବର୍ତ୍ତମାନ ପାଠକେ ବିଚାରକରନ୍ତୁ । କନ୍ୟାର ବିବାହମହୋତ୍ସବ ପିତୃକୁଳ ଓ ପତିକୁଳର ଆନନ୍ଦଦାୟକ । ଏପରିଉତ୍ସବାନନ୍ଦରେ କନ୍ୟା ପରମାନନ୍ଦିତାଥାଏ । ଏକଥା କହିବାବାହୁଲ୍ୟମାତ୍ର । ଏତେବଡ ଆନନ୍ଦସମୟରେ କନ୍ୟା ନିଜଶରୀରରୁ ସମସ୍ତ ଅଳଙ୍କାରକାଢ଼ି ପିତାଙ୍କୁ ପ୍ରତ୍ୟର୍ପଣକରିବାକଥା ନିତାନ୍ତ ଅସମ୍ଭବ । କାରଣ ବିବାହମହୋତ୍ସବବେଳେ କନ୍ୟା ପିତୃଦତ୍ତ ଅଳଂକାରରେ ଅଳଂକୃତା ହୁଅନ୍ତି । କନ୍ୟାପିତା ସେହିକନ୍ୟାକୁ "ସର୍ବାଳଙ୍କାର ମଣ୍ଡିତା ମିମାଂ କନ୍ୟାଂ ତୁଭ୍ୟମହଂ ସମ୍ପ୍ରଦଦେ " ଏହିବାକ୍ୟ ଉଚ୍ଚାରଣକରି ବରଙ୍କୁ ପ୍ରଦାନକରନ୍ତି । ତାହାପରେ ଅଶେଷ

ସମସ୍ତସୁଦ୍ଧା ଯୌତୁକରୂପେ କନ୍ୟାକୁ ପ୍ରଦାନକରନ୍ତି । ଏହା ହିନ୍ଦୁମାନର ଶାସ୍ତ୍ର ବିହିତବିଧି, ଓ ଲୋକପ୍ରଚଳିତପ୍ରଥା । ଏହା କାହାରିସୁଦ୍ଧା ଅବିଦିତନୁହେଁ । ଉପରୋକ୍ତ ମନ୍ତ୍ରାର୍ଥରୁ ସ୍ପଷ୍ଟବୁଝାପଡେ ଯେ କନ୍ୟାପିତା କନ୍ୟାକୁ ଉପଯୁକ୍ତସମୟରେ ବିବାହନଦେଲେ ଉକ୍ତକନ୍ୟା ପୈତୃକସମ୍ବନ୍ଧ ସଂପୂର୍ଣ୍ଣଭାବେ ଛିନ୍ନକରି ସ୍ୱେଚ୍ଛାବରବରଣ କରି ଚାଲିଯିବାଦୋଷାବହନୁହେଁ । ଶାସ୍ତ୍ରୋକ୍ତ ଅଷ୍ଟପ୍ରକାର ବିବାହମଧ୍ୟରୁ ଶ୍ରେଷ୍ଠ ରୂପେ ନିର୍ଦ୍ଦିଷ୍ଟ ଯେଉଁ ପୂର୍ବୋକ୍ତ ବୈଦିକବିବାହ, ସେଅନୁସାରେବିଧିପରିଚାଳନକଲାବେଳେ କନ୍ୟାପିତାଙ୍କର ଆନୁକୂଲ୍ୟ ସଂପୂର୍ଣ୍ଣଦରକାର । ସେହିସେହି ବିବାହମାନଙ୍କରେ କନ୍ୟାପିତା ଅନୁକୂଳଭାବେ କନ୍ୟାପ୍ରଦାନକରିବାକୁହେବବୋଲି ଉକ୍ତଅଛି ଦୁର୍ଭାଗ୍ୟକ୍ରମେ ଯେଉଁକନ୍ୟାର ଉପରୋକ୍ତ ଶ୍ରେଷ୍ଠବିବାହ ସୁବିଧାନଘଟେ, ସେମାନେ ନିଂଦ୍ୟବିବାହବିଧିକ୍ରମେ ବିବାହକରିପାରେ । ସେହିନିଂଦ୍ୟବିବାହରେ ପିତୃକୃତ କନ୍ୟାଦାନର ଆବଶ୍ୟକତାନାହିଁ, କାରଣ ସେପରି ନିଂଦ୍ୟବିବାହରେ କନ୍ୟାପିତାଙ୍କର ପ୍ରାପ୍ୟ ଆନୁକୂଲ୍ୟନଥାଏ । ତେବେକେବେଳେ ମାତ୍ର କନ୍ୟା ନିଜପିତାଙ୍କଠାରୁ ସ୍ୱୀୟସମ୍ବନ୍ଧ ସଂପୂର୍ଣ୍ଣରୂପେ ବିଚ୍ଛିନ୍ନକରେ । ଆଉ ନିଜ ଅଭିଳଷିତ ପତିଠାକୁଚାଲିଯାଏ । ଯେଉଁମାନଙ୍କର ମାତା ପିତା ବନ୍ଧୁବାନ୍ଧବ ଜ୍ଞାତି ଗୋଏ କେହି ନଥାନ୍ତି ସେଭଳିଏକନ୍ୟା ଗଣ୍ଡା ୨ ଆଜିକାଲିସୁଦ୍ଧା ଉପରୋକ୍ତ ସୂତ୍ରକ୍ରମେ ପତିଧରିଚାଲିଯାନ୍ତି । ଏହାସର୍ବସାଧାରଣଙ୍କ ସୁବିଦିତ । ଏସମ୍ବନ୍ଧେ ଅଧିକଗୁଡେ କହିବାଦରକାରନାହିଁ । ଏହାଶାସ୍ତ୍ର ସମ୍ମତ । କାରଣ ମନୁସ୍ୱୀୟ ମନୁସଂହିତା ନବମାଧ୍ୟାୟରେ ଏବିଷୟ ଉଲ୍ଲେଖ କରିଅଛନ୍ତି । ଯଥା —

ତ୍ରୀଣିବର୍ଷାଣ୍ୟୁଦୀକ୍ଷେତ କୁମାର୍ଯୃତୁମତୀସତୀ । ଊର୍ଦ୍ଧ୍ୱଂତୁକାଳାଦେତସ୍ମା ଦ୍ୱିଂଦେତ ସଦୃଶଂପତିଂ । ଶ୍ଳୋ ୯୦ ।

ଅଦୀୟମାନା ଭର୍ତ୍ତାରମଧିଗଚ୍ଛେଦ୍ୟଦିସ୍ୱୟଂ । ନୈନଃକିଂଚିଦବାପ୍ନୋତି ନଚଯଂ ସାଧିଗଚ୍ଛତି । ଶ୍ଳୋ ୯୧ ।

ଅଲଙ୍କାରଂନାଦଦୀତ ପିତ୍ର୍ୟଂ କନ୍ୟା ସ୍ୱୟମ୍ବରା । ମାତୃକଂ ଭ୍ରାତୃଦତ୍ତଂବାସ୍ତେନାସ୍ୟା ଦ୍ୟଦିତଂ ହରେତ୍ । ଶ୍ଳୋ ୯୨ ।

ପିତ୍ରେନଦଦ୍ୟାଚ୍ଛୁଲ୍କଂତୁ କନ୍ୟାମୃତୁମତୀଂହରନ୍ । ସହିସ୍ୱାମ୍ୟାଦତିକ୍ରାମେଦୃତୂନାଂ ପ୍ରତିରୋଧନାତ୍ । ଶ୍ଳୋ ୯୩ ।

ଅର୍ଥ — କନ୍ୟା ସ୍ୱୀୟପିତାଦିକର୍ତ୍ତୃକ ଉପଯୁକ୍ତବରପ୍ରତି ପ୍ରଦତ୍ତା ହୋଇନଥାଏ, ଏପରିସମୟରେ ଯଦିସେ ଋତୁମତୀହେବ ତେବେ ତିନିବର୍ଷ ପ୍ରତୀକ୍ଷାକଲାପରେସ୍ୱେଚ୍ଛା

ନୁସାରେ ବରଣକରିବ ।୧। ଅପ୍ରଦତ୍ତକନ୍ୟା ଯଦି ଯଥାସମୟରେ ସ୍ୱେଚ୍ଛାବର ବରଣକରେ ସେଥିରେ କନ୍ୟାର କୌଣସିଦୋଷନାହିଁ କିମ୍ବା ବରର କୌଣସି ଦୋଷନାହିଁ ।୨। ଏପରି ସ୍ୱୟମ୍ବରଣ କାରିଣୀ-କନ୍ୟା ପିତା ମାତା ଓ ଭ୍ରାତାଦି ପ୍ରଦତ୍ତ ଅଳଙ୍କାର ଗ୍ରହଣକରିପାରିବନାହିଁ ।୩। ଏପରି ଋତୁମତୀକନ୍ୟାକୁ ଯେ ବିବାହକରେ, ସେକନ୍ୟାର ଶୁଳ୍କ କନ୍ୟା ପିତାଙ୍କୁ ଦିଆଯିବନାହିଁ । କାରଣ ସେ ଋତୁରୋଧଦ୍ୱାରା କନ୍ୟାର ମହତ୍ତ୍ୱ ନଷ୍ଟକରିଅଛି ।୪।

ମନୁ ଋତୁମତୀକନ୍ୟାର ସ୍ୱୟମ୍ବରକାଳ ଋତୁଦର୍ଶନଉତ୍ତାରୁ ତିନିବର୍ଷପରେବୋଲି ପ୍ରଥମଶ୍ଳୋକରେ ନିର୍ଦ୍ଦେଶକଲେ । ଗୋଟିଏ ସମ୍ଭ୍ରାନ୍ତକୁଳୀନଘରରୁ ବିବିଧପ୍ରଲୋଭନଦ୍ୱାରା କନ୍ୟା ଅପହରଣକରିବା ନିତାନ୍ତ ଦୋଷାବହ । କିନ୍ତୁ ସେପର୍ଯ୍ୟନ୍ତ କନ୍ୟା ଅବିବାହିତାରହିବା ମଧ୍ୟ ବଡ ଅସୁନ୍ଦର, ସୁତରାଂ ସେଭଳି କନ୍ୟା ସ୍ୱେଚ୍ଛାରେସ୍ୱୟଂ ବୃତପତିଠାକୁ ଘରୁଚାଲିଗଲେ କନ୍ୟାର କିମ୍ବା ବରର ଦୋଷନାହିଁବୋଲି ଦ୍ୱିତୀୟ ଶ୍ଳୋକରେ ଆଦେଶ ଦେଇଅଛନ୍ତି । ଆଉତୃତୀୟ ଶ୍ଳୋକରେ କନ୍ୟା ପିତ୍ରାଦି ଦତ୍ତ ଅଳଙ୍କାରନେଇଁପାରିବନାହିଁବୋଲି କହିବାର ତାତ୍ପର୍ଯ୍ୟଏହିଯେ ଉପଯୁକ୍ତସମୟରେ କନ୍ୟାପ୍ରଦାନ ନକରି ସ୍ୱୟମ୍ବରହିପର୍ଯ୍ୟନ୍ତ ଯିଏଘରେ ରଖିଅଛନ୍ତି, ସେଥିଦ୍ୱାରା କନ୍ୟାର ମହତ୍ତ୍ୱ ସେ ନଷ୍ଟ କରିଅଛନ୍ତି, ପ୍ରକାରାନ୍ତରେ କନ୍ୟା ନାଶକରିଅଛନ୍ତି । ସୁତରାଂ କନ୍ୟା ଜୀବିତାଥିଲେ ମଧ୍ୟ ମୃତକନ୍ୟାଶରୀରରୁ ଅଳଙ୍କାର ଗ୍ରହଣକଲାପରି ତାହାଠାରୁ ପିତାନିଜେ ସ୍ୱପ୍ରଦତ୍ତ ଅଳଙ୍କାରାଦି ଗ୍ରହଣକରିବେ । ତେବେ ଚିରପ୍ରଚଳିତ ପ୍ରଥାନୁସାରେ ସ୍ୱୟଂବୃତାକନ୍ୟା ଶୁଳ୍କରଅଧିକାରୀକିଏ ? ଚତୁର୍ଥଶ୍ଳୋକରେ ମନୁ ଏପ୍ରଶ୍ନର ଉତ୍ତରଦେଇଅଛନ୍ତି । ପଦଶେଷରେ "ଋତୁନାଂ ପ୍ରତିରୋଧନାତ" ଯେଉଁକାରଣ ଦେଖାଅଛନ୍ତି ତହିଁରୁ କନ୍ୟାର ତିନୋଟି ଋତୁରୋଧଦ୍ୱାରା ପିତାଠାରୁ କନ୍ୟାଧିକାର ପୂର୍ଣ୍ଣଭାବେ ଚାଲିଯାଉଥିବାର ଜଣାଯାଏ । ଏହାବୋଲି ପ୍ରଥମ ବା ଦ୍ୱିତୀୟ ରଜୋଦର୍ଶନରେ ପିତାଠାରୁ କନ୍ୟାଧିକାର ଚାଲିଯାଉନାହିଁ ବୋଲି କିଏକହିପାରିବ ? ବସ୍ତୁତଃ ଜଣାଯାଏଯେ ପୂର୍ବୋଦାହୃତ ଶ୍ଳୋକଚତୁଷ୍ଟୟରେ ମନୁଙ୍କର କନ୍ୟାଦାନରେ ଉଦାସୀନ ପିତ୍ରାଦିପ୍ରତି ଉତ୍ତେଜନାର କଠୋର ଆଦେଶରହିଅଛି । ଏବିଷୟ ବାତ୍ସ୍ୟାୟନମହର୍ଷି କନ୍ୟା ସଂପ୍ରଯୁକ୍ତିନାମକାଧିକରଣର ପ୍ରଯୋଜ୍ୟାପାବର୍ତ୍ତନ ପ୍ରକରଣର ୩୬ ଅଧ୍ୟାୟରେ ଲେଖିଅଛନ୍ତି । ଯେଉଁକନ୍ୟାର ବନ୍ଧୁ ସ୍ୱଜନ ମାତାପିତା ଓ ସହୋଦରପ୍ରଭୃତି କେହିନଥିବେ, କୁଳୀନ, ଏବଂ ଧନହୀନା ସେହି ଅନାଥାକନ୍ୟା ଯଦି ରଜୋଦର୍ଶନ ପୂର୍ବରୁ ବିବାହ ହୋଇନପାରେ, ତେବେ

ସ୍ୱୟଂ ବରଣକରିପାରିବ ।

“ ତ୍ରୀଣିକୁମାରୀ ” ଆଦି ସୂତ୍ରରୁମଧ୍ୟ ସ୍ପଷ୍ଟଜଣାଯାଏଯେ- ଯେଉପଯୁକ୍ତସମୟ-ରେ କନ୍ୟାକୁ ବିବାହଦେଇନାହାନ୍ତି ସେକନ୍ୟାପିତା ସେହିକନ୍ୟାର ଅଧିକାରୀନୁହନ୍ତି ‘ ପ୍ରଦାନଂ ପ୍ରାଗୃତୋଃ ” ଏହିଧର୍ମସୂତ୍ରରେମଧ୍ୟ ଋତୁପୂର୍ବରୁ କନ୍ୟାପ୍ରଦାନର ସମୟ ନିର୍ଦ୍ଦିଷ୍ଟଅଛି । ଆଉ ପୂର୍ବୋକ୍ତ ମନୁସଂହିତା ଚତୁର୍ଥ ଶ୍ଳୋକରେ “ ଋତୁମତୀଂ-ହରନ୍” ଏପଦ୍ୟାଂଶରେ କନ୍ୟାଋତୁମତୀହେଲେ ତାହାଠାରୁ ପିତାଙ୍କର ଅଧିକାର ଚାଲିଯାଉଥିବାର ସୁବ୍ୟକ୍ତ । “ ଅନୃତୌଋତୁକାଳେଚ ମନ୍ତ୍ରସଂସ୍କାର କୃତଃପତିଃ ” ଋତୁପୂର୍ବରୁ ବା ଋତୁକାଳରେ ମନ୍ତ୍ରସଂସ୍କାର କର୍ତ୍ତାଙ୍କୁ ପତିକୁହାଯାଏବୋଲି ଲେ-ଖାରୁ ମନୁଙ୍କ ବାଳିକାବିବାହପକ୍ଷପାତ ସୁସ୍ପଷ୍ଟ । ରଜୋଦର୍ଶନପରେ ୧୬ ଦିନ ପର୍ଯ୍ୟନ୍ତକୁ ଋତୁକାଳ କୁହାଯାଏ ସତ୍ୟ କିନ୍ତୁ ଏଠାରେ ସେଅର୍ଥ ନୁହେଁ । ଯେହେତୁ ଭୋଜନସମୟ, ପଠନବେଳା, ଗମନକାଳେ ଇତ୍ୟାଦି ପ୍ରୟୋଗରେ କାଳପଦ ସେହି କ୍ରିୟାର ପୂର୍ବକ୍ଷଣ ବୁଝାଉଥାଏ ସେପରି ଏଠାରେ ଋତୁକାଳେ ପଦର ଅର୍ଥ ଋତୁଆସନ୍ନହେଲେ, ତାନହେଲେ ବାଳିକାବିବାହ ପ୍ରତିପାଦକଗ୍ରନ୍ଥଗୁଡ଼ିକ ସୁସଙ୍ଗତ ହୋଇପାରିବନାହିଁ । ତଥାପି ଶିରୋମଣିପଣ୍ଡିତେ ଗୌତମଧର୍ମସୂତ୍ରରେ ଯୁବତୀବିବାହ ଲେଖାଅଛିବୋଲି ଲେଖିଅଛନ୍ତି । ଏହା ବଡଆଶ୍ଚର୍ଯ୍ୟରକଥା ନୁହେଁକି ?

ପୂର୍ବୋକ୍ତପଣ୍ଡିତେଲେଖିଅଛନ୍ତି — “ ଯଦିନଗ୍ନିକାପଦରେ ବାଳିକାଗ୍ରାହ୍ୟ ହୁଏ ତେବେ ବ୍ରହ୍ମଗୃହିଣୀ ’ ଏବିଶେଷଣଟାଦେବାର ଆବଶ୍ୟକତା କଣଥିଲା ” । ଆଉଠାଏଲେଖିଛନ୍ତି — “ ବ୍ରହ୍ମଗୃହିଣୀପଦରେ “ ଅସଂସୃଷ୍ଟମୈଥୁନା ” ଅର୍ଥାତ୍ ଯେ ମୈଥୁନକରିନାହିଁ ” । (ଉତ୍ତର) ଅସଂସୃଷ୍ଟ ମୈଥୁନାସ୍ଥଳେ ମୈଥୁନପଦର ଅର୍ଥ ପାଶବିକ ମୈଥୁନ ଋଷିଙ୍କ ଅଭିପ୍ରେତନୁହେ । ତାହାରପ୍ରକୃତାର୍ଥ ବାତ୍ସ୍ୟା-ୟନ କାମସୂତ୍ରରୁ ନିମ୍ନରେ ଉଦ୍ଧୃତହେଲା । କନ୍ୟାସଂପ୍ରଯୁକ୍ତିକାଧିକରଣ କନ୍ୟା ବିସ୍ରମ୍ଭଣ ପ୍ରକରଣରେ —“ ରତିସୋରତଃ ପ୍ରୀତିର୍ଭାବୋରାଗୋବେଗଃ ସମାପ୍ତିରିତି ରତିପର୍ଯ୍ୟାୟାଃ ” ରସ, ରତି, ପ୍ରୀତି, ଭାବ, ରାଗ, ଓ ସମାପ୍ତି ଏଗୁଡ଼ିକ ରତିପର୍ଯ୍ୟାୟ । “ ସଂପ୍ରୟୋଗୋ ରତଂରହଃ ସୁରତଂ ମୋହନଂ ସୁରତପର୍ଯ୍ୟାୟାଃ ” ସଂପ୍ରୟୋଗ ରତ, ରହ, ସୁରତ, ଓ ମୋହନ ଏପଦଗୁଡ଼ିକ ସୁରତପର୍ଯ୍ୟାୟ । ‘ଆଲିଙ୍ଗନ ଚୁମ୍ବନ-ନଖଚ୍ଛେଦ୍ୟ ଦଶନଚ୍ଛେଦ୍ୟ ସମ୍ବେଶନସୀତ୍କୃତ ପୁରୁଷାୟିତୌପରିଷ୍ଟକାନାମଷ୍ଟା ନାମ-ଷ୍ଟଧାବିକଳ୍ପ ଭେଦା ଦଷ୍ଟାବଷ୍ଟକାଶ୍ଚତୁଃଷଷ୍ଟିରିତି ବାଭ୍ରବୀୟାଃ ,, ଏହି ଚଉଷଠି ମୈଥୁନର ଅଂଗରୂପେ ଅଭିହିତ । ଏହି ଅଂଗଗୁଡ଼ିକର ସମଷ୍ଟି ମୈଥୁନରୂପେ

ପ୍ରତିପାଦିତ । ଏହାମାନ ଅଭ୍ୟନ୍ତର ମୈଥୁନ । ଏହିମୈଥୁନମାନ ଗୃହ୍ୟସୂତ୍ର ମାନଙ୍କରେ ମୈଥୁନନାମରେ ବ୍ୟକ୍ତହୋଇଅଛି । ଲିଂଗଦ୍ୱୟସଂଘାତ ପ୍ରତିପାଦିତରୂପ ପାଶବିକ ମୈଥୁନମାନ ଯଦି ମୈଥୁନନାମରେ ଅଭିହିତହୁଅନ୍ତା, ତାହାହେଲେ କାମସୂତ୍ରାଦି ପ୍ରଣୟନକରିବାଲାଗି ବାତ୍ସ୍ୟାୟନାଦି ମହର୍ଷିମାନଙ୍କୁ ବୃଥା ଏତେ ପ୍ରୟାସ କରିବାକୁପଡିନଥାନ୍ତା । କାରଣସେହି ଅଶିକ୍ଷଣୀୟ ବିଦ୍ୟା ପ୍ରୟୋଗକରି ପଶୁ ପକ୍ଷୀ କୀଟ ପତଙ୍ଗ ମଧ୍ୟ ନିଜନିଜର ମନୋରଥ ଚରିତାର୍ଥ କରିଥାନ୍ତି । ତେବେ ଏହିଆବଶ୍ୟକୀୟ ଓ ମହାଗୁପ୍ତବିଦ୍ୟା ସ୍ତ୍ରୀ ଓ ପୁରୁଷ କେଉଁସମୟରେ ଅଧ୍ୟୟନକରି-ବେ ? ଏହାର ଉତ୍ତରରେ ବାତ୍ସ୍ୟାୟନ କାମସୂତ୍ରର ସାଧାରଣାଧିକରଣ ବିଦ୍ୟା ସମୁଦ୍ଦେଶ ପ୍ରକରଣର ତୃତୀୟାଧ୍ୟାୟରେ ଯାହା ଲେଖିଅଛନ୍ତି ତାହାର ଅର୍ଥମାନ ସର୍ବସାଧାରଣଙ୍କ ଅବଗତିନିମନ୍ତେ ନିମ୍ନରେ ପ୍ରକାଶିତହେଲା । ୧ ସୂତ୍ରାର୍ଥ– ଶ୍ରୁତି ସ୍ମୃତି ଅର୍ଥ ନୀତି ଦଣ୍ଡନୀତି ଓ ତନ୍ତ୍ର ପ୍ରଭୃତି ଶାସ୍ତ୍ର ଅଧ୍ୟୟନକରୁଥିବାସମୟରେ ସେହି ସେହି ଶିକ୍ଷଣୀୟ ଶାସ୍ତ୍ରାଧ୍ୟୟନସମୟ ବ୍ୟର୍ଥନକରି ମଧ୍ୟମଧ୍ୟରେ ପୁରୁଷ କାମସୂତ୍ର ଓ ସଂଗୀତାଦି ବିଦ୍ୟା ଅଭ୍ୟାସକରିବ । ୨ ସୂତ୍ରାର୍ଥ – ସ୍ତ୍ରୀ ଯୌବନପୂର୍ବରୁ ଉକ୍ତ କାମ ଶାସ୍ତ୍ର ଓ ସଂଗୀତାଦି ଶିକ୍ଷାକରିବ ।

୩ ସୂତ୍ରାର୍ଥ – ପ୍ରଦତ୍ତା ବାଳିକା ପତିଙ୍କ ଅଭିପ୍ରାୟ [ଲିଂଗତାଦି ପରଂପରାନୁକ୍ରମେ] ଅବଗତ ହୋଇ ଶିକ୍ଷାକରିବାକୁହେବ । ଉପରୋକ୍ତଦ୍ୱିତୀୟ ଓ ତୃତୀୟ ସୂତ୍ରରୁ ବାଳି-କାବିବାହ ଓ ଯୁବତୀ ବିବାହ ଉଭୟ ବାତ୍ସ୍ୟାୟନଙ୍କ ଅଭିପ୍ରେତବୋଲି ସୁବ୍ୟକ୍ତ । ଆଉ ଏହିଅଧ୍ୟାୟର ଅଠତିରିଶିସୂତ୍ରରେ ବାତ୍ସ୍ୟାୟନ ଲେଖିଅଛନ୍ତି – ଯେତେବେଳେ ସ୍ତ୍ରୀର ଯୌବନ ପ୍ରାପ୍ତହେବ ଅର୍ଥାତ୍ ରଜୋବତୀହେବ ସେତେବେଳେ ତାହାର ସହବାସ ଉଦ୍ବେଗକର ହେବନାହିଁ । ଅତଏବ ପତି ପୂର୍ବରୁ ଅନୁରାଗଦର୍ଶାଇ ସ୍ତ୍ରୀର ଲଜ୍ଜାଦୂରକରି ବିଶ୍ୱାସଜନ୍ମାଇଥିବ ।

ଅଣଚାଳିଶିସୂତ୍ର – ବାଲ୍ୟାବସ୍ଥାରେ ସ୍ତ୍ରୀର ଏପରିଭାବେ ଚିତ୍ତରଞ୍ଜନକରିବା-ଆବଶ୍ୟକ ଯେପରିକି ରଞ୍ଜନଦ୍ୱାରା ସେମାନଙ୍କର ଯୌବନାବସ୍ଥା ପ୍ରାପ୍ତିମାତ୍ରେ ପତିଠାରେ ସ୍ୱୟଂ ଅନୁରକ୍ତାହେବ । ଏଥିରୁସ୍ପଷ୍ଟ ଜଣାଯାଏ ବାଲ୍ୟବିବାହ ବାତ୍ସ୍ୟାୟନମହର୍ଷିଙ୍କର କଦାପି ଅନଭିପ୍ରେତନୁହେ ।

କନ୍ୟାସଂପ୍ରଯୁକ୍ତିକାଧିକରଣରେ ସେ ଲେଖିଅଛନ୍ତି ବିବାହାନନ୍ତର ମଧ୍ୟ ଶ-ଯ୍ୟାରେ ପୁରୁଷ ବାଳିକାର ବିଶ୍ୱାସ ଜନନାର୍ଥ ଏପରିଚେଷ୍ଟାକରିବ ଯେ ଯାହାଦ୍ୱାରା କାଳେ ରଜୋଦର୍ଶନାନନ୍ତର ସମ୍ଭୋଗବିଷୟରେ ତାହାର କୌଣସିଉଦ୍ବେଗନହେବ-

ନାହିଁ । ଏସକଳଉକ୍ତି ପ୍ରାବଲ୍ୟରୁ ପୂର୍ବୋକ୍ତ ସିଦ୍ଧାନ୍ତ ଦୃଢୀଭୂତହୁଏ । ଟୀକାହେ-ଲେ (ପୃ ୧୧୮ ] ଏବଂ ଚତ୍ତ୍ୱାକୁଗୋବାଞ୍ଛା ମୁପାଦ୍ୟେନ ପ୍ରସାଧୟେତ୍ । ତଥାସ୍ୟ -ସାକୁ ରକ୍ତାଚ ସୁବସ୍ତ୍ରବ୍ଧା ପ୍ରଜାଯୂତେ । ଇତ୍ୟାଦି ସୂତ୍ରଲେଖାର ଆବଶ୍ୟକତାକଅଣ?

ଏହି ଅଧ୍ୟାୟର ଦ୍ୱିତୀୟସୂତ୍ର ବ୍ୟାଖ୍ୟାନସ୍ଥଳେ ବ୍ୟାଖ୍ୟାକାର ଜୟମଙ୍ଗଳ ଲେଖିଅଛନ୍ତି କନ୍ୟାଦ୍ୱିବିଧା, ସଂସର୍ଗ ଯୋଗ୍ୟା ତଦ୍‌ବିପରୀତ । ଇତ୍ୟାଦି । ସ୍ମୃତି-ରେ ଶତାନନ୍ଦବଚନ ଦେଖାଯାଏ — ଗର୍ଭାଦଷ୍ଟମବର୍ଷେଭ୍ୟୋ ଦଶମେ ଦ୍ୱାଦଶେଽପିବା କନ୍ୟା ପରିଣୟଃ ଶସ୍ତଇତି ବାତ୍ସ୍ୟାୟନ ସଂମତଂ । ଅନ୍ୟମାନେସୁଦ୍ଧା ବାତ୍ସ୍ୟାୟନଙ୍କର ଏହି ମନୋଗତ ଅଭିପ୍ରାୟ ଆବିଷ୍କାର କରିଅଛନ୍ତି । ଅତଏବ ଅମ୍ଭେ ଯେଉଁ ମୈଥୁନର ଶାସ୍ତ୍ରୀୟତା ବ୍ୟକ୍ତକରିଅଛୁଁ ସେହି ମୈଥୁନ ବର୍ଜନମାତ୍ର ବ୍ରହ୍ମଚର୍ଯ୍ୟର ସୁପ୍ରସିଦ୍ଧଲକ୍ଷ୍ୟ— ।

ଉପରୋକ୍ତ ଶାସ୍ତ୍ରରୁ ସ୍ପଷ୍ଟଜଣାଯାଏଯେ ବାଳିକାବିବାହ କୁଶ୍ରୀଳଖେଳକୁହେ ଆଉ ମୈଥୁନପଦରଅର୍ଥ ପାଶବିକ ମୈଥୁନକୁହେ, ଶାସ୍ତ୍ରୋକ୍ତ ମୈଥୁନାଭାବରୁ ବାଳିକାବିବାହ କଥିତହୋଇଥିବାସ୍ଥଳେ ଯେଉଁ ବ୍ରହ୍ମଚର୍ଯ୍ୟରଣୀୟର ଆଦେଶ ଦେଇଥିଚ୍ଛ, ତାହାସୁଦ୍ଧା ଅସାର୍ଥକ ନୁହେ । ଏବଂ ଅଳ୍ପବୟସ୍କ ବାଳିକାପକ୍ଷରେ ବ୍ରହ୍ମଚର୍ଯ୍ୟବିଧାନ ଆଉ ଅସମ୍ଭବ ନୁହେ । ଯେଉଁମାନେ ଅସମ୍ଭବ ମନେକରନ୍ତି ସେମାନଙ୍କମତରେ ଅଳ୍ପବୟସ୍କ ପୁରୁଷର ସୁଦ୍ଧା ବ୍ରହ୍ମଚର୍ଯ୍ୟ ସମ୍ଭବପର ହେବନାହିଁ । ଗର୍ଭାଷ୍ଟମ ବର୍ଷରେ ବ୍ରାହ୍ମଣର ଉପନୟନକର୍ତ୍ତବ୍ୟ । ପରେ ବ୍ରହ୍ମଚର୍ଯ୍ୟସୁଦ୍ଧା କର୍ତ୍ତବ୍ୟ ଇତ୍ୟାଦି ମନୁବଚନ-ର ସେମାନେ ଆଉ କଅର୍ଥ ଦେଖାଇ ସମାଧାନକରିବେ ପାଠକେ ଥରେ ବିଚାର କରନ୍ତୁ ।

୪ ଅମ୍ଭର ଶିରୋମଣି ପଣ୍ଡିତେ ଲେଖିଅଛନ୍ତି — " ହରଗୌରୀକଣ୍ଣାର ପରବର୍ତ୍ତି ଅଂଶଦେଖିଲେ ବାଳିକାବିବାହ ତାଙ୍କର ଅଭିମତ ଥିଲାପରି ଜଣାଯାଏନାହିଁ ।— ଚତୁର୍ଥୀଦିବସରେ ପ୍ରାୟଶ୍ଚିତ୍ତ ହୋମପରେ ଅଗ୍ନିସମୀପରେ ଉଦକାଞ୍ଜଳି ପ୍ରଦକ୍ଷିଣ କରି ନିଜସ୍ତ୍ରୀକୁ ପୂର୍ବମସ୍ତକରେ ଶୁଆଇ ମନ୍ତ୍ରପଢ଼ି ତାରଯୋନିସ୍ପର୍ଶକରିବ" ଇତ୍ୟାଦି । ଏଥିପୂର୍ବେ ଏପ୍ରଶ୍ନର ଉତ୍ତରଦିଆଯାଇଥିବାରୁ ଏଠାରେ ଫେରେ ସେସବୁ ଲେଖିବା ଅନାବଶ୍ୟକମନେକରେ ।

୫ " ଅକ୍ଷତଯୋନିର୍ହି ଅତ୍ୟନ୍ତ ସ୍ୱୀକୃତାଭବତ, ଅକ୍ଷତଯୋନ୍ୟାଃ ପର୍ଯ୍ୟୁଷିର-ଣୋତ୍ତରକାଳଂ ପୁନଃସଂସ୍କୃତ୍ୟ ପରିଣେତବ୍ୟା ଇତିସ୍ମରଣାତ୍ " ମାତୃଦତ୍ତଙ୍କରଏହି ବ୍ୟାଖ୍ୟାନାଂଶଉଦ୍ଧାରକରି ପଣ୍ଡିତେ ଲେଖିଅଛନ୍ତିଯେ ,' ତାହାରଅର୍ଥ ,, ଗୃହ୍ୟ-

କାଉଣ୍ଟମତରେ ଯୁବତୀ ବିବାହ ଉଲ୍ଲିଖିତ ।

ତାଙ୍କର ଏହିଲେଖାଦେଖିଲେ କିଏ ହାସ୍ୟ ସମ୍ବରଣକରିପାରିବ? ତଥାପି ଅସ୍ମତ୍ପଣ୍ଡିତଙ୍କର ଉକ୍ତିଦେଖି ଅମ୍ଭେ ଉପହାସକରିବାକୁ ନିତାନ୍ତଲଜ୍ଜା ବୋଧକରୁ । କାରଣ ଉକ୍ତ ବ୍ୟାଖ୍ୟାନାଂଶର ଅର୍ଥ — କନ୍ୟା ଅର୍ଥାତ୍ ବାଳିକା ପ୍ରଦାନକଲାନ୍ତ ଦ୍ୱାରା ବରର ସ୍ୱୀକୃତା ହୁଏ ସତ୍ୟ । କିନ୍ତୁ କାଳେ ଉକ୍ତକନ୍ୟାର ଅକ୍ଷତଯୋନିଅବସ୍ଥାରେ ଯଦିସେହି ବରର ମରଣଘଟେ, ତାହେଲେ କନ୍ୟାକୁ ପୁନଃସଂସ୍କାର କରିଶେଷେ ଅନ୍ୟବରକୁ ପ୍ରଦାନକରିବାକୁହେବବୋଲି କେତେକଣ ଋଷିଙ୍କର ମତ ସ୍ମୃତିଶାସ୍ତ୍ରରେଦେଖାଯାଉଥିବାରୁ ମାତୃଦତ୍ତଙ୍କମତରେ ସେହିକନ୍ୟା ଅତ୍ୟନ୍ତ ସ୍ୱୀକୃତାନୁହେଁ । ସୁତରାଂ ବର ବିବାହପରେ ନିଜସ୍ତ୍ରୀକୁ କ୍ଷତଯୋନିକରିବା ଅତ୍ୟନ୍ତ ଆବଶ୍ୟକ । ତାହାହେଲେ ଉକ୍ତକନ୍ୟା ଅତ୍ୟନ୍ତ ସ୍ୱୀକୃତାହେବ । ଯେହେତୁ ତାର ଅଉ ଗତ୍ୟନ୍ତର ନଥିବ । ଅତଏବ ମନୁ ଲେଖିଛନ୍ତି — ପାଣିଗ୍ରାହସ୍ୟ ସାଧ୍ୱୀସ୍ତ୍ରୀ ଜୀବତୋ ବା ମୃତସ୍ୟବା । ପତିଲୋକମଭୀପ୍ସନ୍ତୀ ନାଚରେତ୍ କିଂଚିଦପ୍ରିୟଂ "ଅର୍ଥ — ଯେ ପାଣିଗ୍ରହଣ ସଂସ୍କାର ମାତ୍ରରେ ବରବୋଲି ନିର୍ଦ୍ଦିଷ୍ଟ, ସେହିପୁରୁଷ ଜୀବନରେ ଥାଉ ବା ନଥାଉ, ସାଧ୍ୱୀସ୍ତ୍ରୀ କଦାପି ସେହି ବରର ଅପ୍ରିୟ ଆଚରଣକରିବାକୁ ଇଚ୍ଛାକରିବ ନାହିଁ ଥରେ ପ୍ରଦତ୍ତ କନ୍ୟାର ପୁନର୍ଦ୍ଦାନସମ୍ବନ୍ଧେ ମନୁ ନିଜର ଅନିଚ୍ଛା ପ୍ରକାଶକରି ଲେଖିଛନ୍ତି — "ସକୃଦଂଶୋ ନିପତତି ସକୃତ୍ କନ୍ୟା ପ୍ରଦୀୟତେ । ସକୃଦାହ ଦଦାମୀତି ତ୍ରୀଣ୍ୟେତାନି ସତାଂସକୃତ"

ଉକ୍ତ ପଣ୍ଡିତମହୋଦୟ ଲେଖିଅଛନ୍ତି " ସୁତରାଂ ସ୍ମୃତ୍ୟ ସୂତ୍ରକାର ଓ ବ୍ୟାଖ୍ୟା ତାଙ୍କମତରେ ଯୁବତୀବିବାହ ପ୍ରଶଂସିତ ଓ ଆଦୃତ. ବାଳିକା ବିବାହ ଅନୁମୋଦିତନୁହେଁ । ବନ୍ଦ୍ୟାକୃଷ୍ଣଙ୍କର ପ୍ରଭାଯୋକ୍ତି କେଉଁଶ୍ରେଣୀର ପାଠକମାନେ ସ୍ଥିର କରନ୍ତୁ" ଅମ୍ଭେମାନେ ପାଠକଙ୍କଉପରେ ବର୍ତ୍ତମାନ ସେହି ସ୍ଥିରକରିବା ଭାର ନ୍ୟସ୍ତକରୁଅଛୁ ।

ପାଠକେ! ଶିରୋମଣିପଣ୍ଡିତେ ନିକେ ପାଠୀବ୍ରାହ୍ମଣ । ଅର୍ଥାତ୍ ଅଜ କାଲି ପାଠିବ୍ରାହ୍ମଣବୋଲି ଯେଉଁ ସମାଜ ପରିଚୟ ଦିଅନ୍ତି ସେହିଶ୍ରେଣୀର ବ୍ରାହ୍ମଣ । ତାଙ୍କର ଜ୍ଞାତି ଗୋଷ୍ଠୀ ପରିବାର ବନ୍ଧୁବାନ୍ଧବ ସମସ୍ତେ ନିଜେନିଜେ ପାଠୀସଞ୍ଜ୍ଞାବ୍ୟବହାରକରନ୍ତି । ସେ ମାତ୍ର ନିଜର ସାତପୁରୁଷରେ ନଥିବାର ତ୍ରିପାଠୀସଞ୍ଜ୍ଞା ବ୍ୟବହାରକରୁଅଛନ୍ତି । ବୋଧହୁଏ ସଂସ୍କାର ପ୍ରୟାସୀ ହେବାହେତୁରୁ ପଣ୍ଡିତେ ନିଜସଞ୍ଜ୍ଞା ତ୍ୟାଗପୂର୍ବକ ଅନ୍ୟସଞ୍ଜ୍ଞା ବ୍ୟବହାରକରି ନିଜକୁ ତ୍ରିପାଠୀ ସଜ୍ଜକବୋଲି ପରିଚୟ

କଥନ୍ତି । ପାଠକେ! କେଉଁ ଧର୍ମ ଶାସ୍ତ୍ରର ଅଲୌକିକ ପାଣ୍ଡିତ୍ୟବଳରୁ ପଣ୍ଡିତଙ୍କର କୁଳସ୍ଥିତ ପାଠୀପଦ ବ୍ୟବହାରରେ ଲଜ୍ଜା କମ୍ଭା କି ପାଠୀପଦ ବ୍ୟବହାରରେ ଏତେ ଶ୍ରଦ୍ଧା ଜାତହେଲା ଥରେ ପଚ୍ଛରନ୍ତୁ କଉତ୍ତର ଦେବେ । ମୁଁ ଜାଣେ ଲୋକ ପଣ୍ଡିତ ହେଲେ ପାଣ୍ଡିତ୍ୟବଳରେ ନିଜକୁଳର ଉନ୍ନତିକରେ । ଦେଖନ୍ତୁ ଯେ ଶିରୋମଣି ପଣ୍ଡିତେ ନିଜକୁଳ ପରଂପରାଗତ ସଂଜ୍ଞା ବ୍ୟବହାରରେ ପରାଙ୍ମୁଖ । ଏହା କହିବାର କଥା କେଜାଣି, " ଭବିତ୍ତ୍ୱାନନ୍ତ ତତ୍ତ୍ୱିଦଃ " ।

ଯେଉଁମାନେ ବୈଦିକ ଲିଙ୍ଗ ( ଯହିଁରୁ କାର୍ଯ୍ୟର ସୂଚନାମାତ୍ର ମିଳେ ସେହିଙ୍କ ] ନେଇ ନିଜର ଅଭିଳାଷ ସିଦ୍ଧକରିବାକୁ ଇଚ୍ଛାକରନ୍ତି, ସେମାନଙ୍କର କାର୍ଯ୍ୟ କଦାପି ଠିକ୍‌ନୁହେ । କାରଣ ଯେଉଁଠାରେ ବେଦନା [ ଅର୍ଥାତ୍ ବଧ୍ଯ ) ଦେଖାଯାଏ—ନାହିଁ, ସେସ୍ଥଳରେମାତ୍ର ଲିଂଗ ଅନ୍ୱେଷଣ କରି କର୍ତ୍ତବ୍ୟବୋଲି ଶାସ୍ତ୍ରକାରମାନଙ୍କମତ । ରଜୋଦର୍ଶନ ପୂର୍ବରୁ ଶତଶତ ବାଳିକା ବିବାହ ରୂପ ବେଦନା ( ଯହିଁରେ କାର୍ଯ୍ୟ ପୁର୍ବରୁ ରୂପେ କହାହୋଇଥିବ ତାହାନାମ ବେଦନା ] ଅମ୍ଭେ-ମାନେ ଭାରତୀୟ ବ୍ରାହ୍ମଣଜାତି ମଧ୍ୟରେ ଦେଖିବାକୁପାଉଁ । ଏବଂ ଉପରୋକ୍ତ ବେଦନାବଳରେ ସ୍ୱାମୀମାନଙ୍କପକ୍ଷରେ ଅଗ୍ନ୍ୟାଦିଦର୍ଶ ବୟସ ମାତ୍ର ବିବାହକାଳରୂପେ ଅପରୋକ୍ଷଭାବେ ବ୍ୟବସ୍ଥାପିତ ହେଉଥିବାହେତୁ ନିର୍ବିବାଦ ଶୋଯାଏ । ଅଭି ପ୍ରତ୍ୟକ୍ଷ ବେଦନାଦ୍ୱାରା ପ୍ରତିପାଦିତ କାର୍ଯ୍ୟସିଦ୍ଧିଲାଗି ଜଗତରେ କେହିହେଲେ ପ୍ରାଚୀନ ଲିଂଗନେଇ ପର୍ଥାନ୍ତର ଅନୁମାନକରିବାପାଇଁ ପ୍ରୟାସକରେନାହିଁ । ଏଠାରେ ଗୋଟିଏ କ୍ଷୁଦ୍ରଉଦାହରଣଦେବା ଆବଶ୍ୟକମନେକରେ, ଗୋଟିଏଲୋକଦେଖିଲାଯେ ମାର୍ଗରେ ବଡଜନ୍ତୁଟିଏ ଯାଉଛି, ତାର ଶୁଣ୍ଢ ଅଛି, ବଡବଡ଼ ଦାନ୍ତ ଦୁଇଟିଅଛି । କାନ ଯୋଡିକ କୁଲାପରି । ଏପରିଜନ୍ତୁ ଏଥିପୂର୍ବରୁ ବହୁତଥର ସେ ଦେଖିଥିଲା ସୁତରାଂ ଜନ୍ତୁଟିକୁ ଦେଖିଲାମାତ୍ରେ ହସ୍ତୀବୋଲି ସ୍ଥିରକଲା, ଦେଖେ ସେହିହସ୍ତୀର ପଛରେ ଗୋଟିଏ ସୈନିକବେଶଧାରୀ ପୁରୁଷ ଅଛିଅଛି ତାକୁଦେଖି ଭାବିଲା ଏପରି ବେଶଧାରୀ ପୁରୁଷମାନେ ଅଶ୍ୱାରୋହଣକରି ଯୁଦ୍ଧଯାତ୍ରାଦିକରନ୍ତି । ସୁତରାଂ ଏପୁରୁ-ଷ ଅଶ୍ୱାରୋହୀ, ତେବେ ପଚେଯିବାଜନ୍ତୁଟି ହାତୀନୁହେଁକନ୍ତୁ ଅଶ୍ୱ । ଯଦି ସେହିଜନ୍ତୁଟି ଅଶ୍ୱନୁହନ୍ତା,ତାହାହେଲେ କାହିଁକି ଏ ଅଶ୍ୱାରୋହୀଗମନକରନ୍ତା । ଏପରି ଅନୁ-ମାନକରା କେବଳ ପ୍ରଯାସ ଭିନ୍ନ ଅଉ କିଛିନୁହେଁ ।ସୁତରାଂ ଅମ୍ଭେମାନଙ୍କ ବିଧିସିଦ୍ଧ କାର୍ଯ୍ୟ ପ୍ରତ୍ୟକ୍ଷାନୁହିତ ଏହିକାର୍ଯ୍ୟକୁ ଲିଂଗଦ୍ୱାରାବିରୋଧକରି ଅନ୍ୟପ୍ରକାର ଅନୁମାନ କରି: କୌଣସି ପ୍ରକାର ଶାସ୍ତ୍ରସଙ୍ଗତ ବା ଯୁକ୍ତି ଯୁକ୍ତନୁହେ ।

ସ୍ମୃତି ଅପେକ୍ଷା ଶ୍ରୁତି ବଳବତ୍ତର । ସୁତରାଂ ବୈଦିକ ମନ୍ତ୍ର ପ୍ରମାଣନେଇଁ ସୁବିଜ୍ଞବିବାହ କର୍ତ୍ତବ୍ୟବୋଲି ଆମ୍ଭ ପଣ୍ଡିତଙ୍କର ମତ । (ତାହାର ଉତ୍ତର) ଆମ୍ଭେମାନେ ଯେଉଁପ୍ରମାଣନେଇଁ ସମସ୍ତ ବିଷୟ ସିଦ୍ଧାନ୍ତକରୁଁ ସେପ୍ରମାଣର ଅର୍ଥ କଣ? ଉତ୍ତରରେ କହିପାରୁ,ଯେ ବିପ୍ରମେୟ ବୁଝାଇବା ଉପଯୋଗୀ ସେପ୍ରମାଣ – ଏଥିରେ ସନ୍ଦେହନାହିଁ । ଶ୍ରୁତି ଲିଂଗ ବାକ୍ୟାଦି ଭେଦରେ ସେହିପ୍ରମାଣ ଛଅପ୍ରକାର ଯଥା–" ଶ୍ରୁତି, ଲିଂଗ ବାକ୍ୟପ୍ରକରଣ ସ୍ଥାନ ସମାଖ୍ୟା ସମବାୟେ ପାରଦୌର୍ବଲ୍ୟମର୍ଥ ବିପ୍ରକର୍ଷାତ୍ " ( ଜୈମିନି ୩ । ୩।୧୪ ) ଏହି ଛଟିକାରଣମଧ୍ୟରୁ ସନ୍ନିକୃଷ୍ଟ ଅପେକ୍ଷା ବିପ୍ରକୃଷ୍ଟଗୁଡିକ ଉତ୍ତରୋତ୍ତର ଦୁର୍ବଳହୁଅନ୍ତି । ବିପ୍ରକୃଷ୍ଟସ୍ଥଳେ ଶ୍ରୁତିଗ୍ରାହ୍ୟ ହୁଏନାହିଁ,କିମ୍ବା ସନ୍ନିକୃଷ୍ଟସ୍ଥଳେ ସ୍ମାର୍ତ୍ତ ଶ୍ରୁତି ଅଗ୍ରାହ୍ୟହୁଏନାହିଁ । ଏହିଜଟିଳ ମୀମାଂସାଶାସ୍ତ୍ରର ବ୍ୟାଖ୍ୟାନ ବିଷୟ ପ୍ରଦର୍ଶାଇ ପ୍ରବନ୍ଧବୃଦ୍ଧିକରିବା ଲକ୍ଷ୍ୟନୁହେଁ । ସୂକ୍ଷ୍ମରେ କେତୋଟି ଉଦାହରଣଦେଖାଇ ସ୍ୱମତ ସମର୍ଥନରେ ତତ୍ପରହେଉଅଛୁଁ ।

୧ ଉଦାହରଣ – ସମାବେଶନସ୍ଥଳେ, "ଅନ୍ୟାର୍ଦ୍ଦେ ନାମନ୍ତ୍ରମନ୍ତ୍ରାଃସ୍ୟୁଃ" (ଆପସ୍ତମ୍ବ ଗୃହ୍ୟସୂତ୍ର) ଏହାଟିଗୋଟିଏ ସ୍ମାର୍ତ୍ତ ଶ୍ରୁତି । ଏସ୍ଥଳେ ଭାଷ୍ୟରେସୁଦ୍ଧା ସୁଦର୍ଶନାଚାର୍ଯ୍ୟ ଲେଖିଅଛନ୍ତି – " ଅହଂଗର୍ଭମାଦଧାମି ଇତ୍ୟାଦି ଲିଂଗର ବିରୁଦ୍ଧହେଲେହେଁ ଉକ୍ତ ସ୍ମାର୍ତ୍ତ ଶ୍ରୁତି ବଳବତ୍ତରହେବାରୁ ଗ୍ରାହ୍ୟ ।

୨ ଉଦାହରଣ – ପ୍ରୟୋଗପଦ୍ଧତିରେ – " ଅରୋହୋଭୁ ମିତ୍ୟନୁ ବା କର୍ମକେଶ୍ୟା ବା ଜପନ୍ନେଦାଭ୍ରମନ୍ତ୍ରସ୍ୟେତ୍ " ପୂର୍ବୋକ୍ତ ଲିଂଗରସହ ଏହାର ବିରୋଧ ଦେଖାଯାଉଥିଲେସୁଦ୍ଧା ଲିଂଗଅପେକ୍ଷା ଏବଳବତ୍ତବୋଲି ଭାଷ୍ୟରେ ପ୍ରୟୋଗପଦ୍ଧତିକାର ଲେଖିଅଛନ୍ତି । ହରଦତ୍ତ ଓ କପର୍ଦ୍ଦୀ ପ୍ରଭୃତି ଭାଷ୍ୟକାରମାନେ ସୁଦ୍ଧା ଉପରୋକ୍ତ ସ୍ମାର୍ତ୍ତ ଶ୍ରୁତି ବୈଦିକଲିଂଗଠାରୁ ବଳବତ୍ତରବୋଲି ନିଜ ନିଜ ଭାଷ୍ୟରେ ଉପରୋକ୍ତ ମନ୍ତ୍ର ବ୍ୟାଖ୍ୟାନସ୍ଥଳେ ଲେଖିଯାଇଅଛନ୍ତି ।

୩ ୟ ଉଦାହରଣ – ବୈଦିକଲିଂଗ ଦେଖାଯାଏ, ବାରୁଣିମନ୍ତ୍ରରେ ବରୁଣଙ୍କ ସ୍ତୁତିକରିବାକୁହେବ । କିନ୍ତୁ " ବାରୁଣୀଭିରଥାଦିତ୍ୟ ମୁପସ୍ଥାୟ ପ୍ରଦକ୍ଷିଣଂ । କୃତ୍ୱାନ୍ଦିଶୋ ନମସ୍କୁର୍ଯ୍ୟାଦ୍ଦିଗୀଶାଂଶ୍ଚ ପୃଥକ୍ ପୃଥକ୍ । ଇତି ,, ଏହିସ୍ମାର୍ତ୍ତ ଶ୍ରୁତି ବଳରୁ ଇମଂମେ ଇତ୍ୟାଦି ବାରୁଣ ମନ୍ତ୍ରରେ ସୂର୍ଯ୍ୟଙ୍କ ସ୍ତୁତିକରିବାକୁହୁଏ । ଏଠାରେ ଲିଂଗ ଦୁର୍ବଳଦେଖାଯାଏବୋଲି ସର୍ବଜ୍ଞ ଶିରୋମଣି ମାଧବାଚାର୍ଯ୍ୟଙ୍କ ଭାଷ୍ୟରେ ଦେଖାଯାଏ ।

୪ ଉଦାହରଣ – ଉଦ୍ବୁଧ୍ୟସ୍ୱାଗ୍ନେ ଇତ୍ୟାଦି ଅଗ୍ନେୟମନ୍ତ୍ରରେ ସୁଦ୍ଧା ସ୍ମାର୍ତ୍ତ ଶ୍ରୁତିବଳରୁ

ନାହିଁ । ଏସକଳଉକ୍ତି ପ୍ରାବଲ୍ୟରୁ ପୂର୍ବୋକ୍ତ ସିଦ୍ଧାନ୍ତ ଦୃଢ଼ୀଭୂତହୁଏ । ଟୀକାକାରମାନେ-କେ (ପୃ ୧୧୮ ] ଏବଂ ତତ୍ତ୍ୱନୁଗୋବାଞ୍ଛା ମୁପାଦ୍ୟେନ ପ୍ରସାଧୟେତ୍ । ତଥାସ୍ୟ - ସାଂକୁ ରକ୍ଷ୍ୟାତ ସୁବସ୍ତ୍ରଂ ପ୍ରଜାୟତେ । ଇତ୍ୟାଦି ସୂତ୍ରଲେଖାର ଆବଶ୍ୟକତାକଅଣ ?

ଏହି ଅଧ୍ୟାୟର ଦ୍ୱିତୀୟସୂତ୍ର ବ୍ୟାଖ୍ୟାନସ୍ଥଳେ ବ୍ୟାଖ୍ୟାକାର ଜୟମଂଗଳ ଲେଖିଅଛନ୍ତି କନ୍ୟାଦ୍ୱିବିଧା, ସଂସର୍ଗ ଯୋଗ୍ୟା ତଦିତରାଚ । ଇତ୍ୟାଦି । ସ୍ମୃତି-ରେ ଶତାନନ୍ଦବଚନ ଦେଖାଯାଏ — ଗର୍ଭାଦଷ୍ଟମବର୍ଷେଭ୍ୟ ଦଶମେ ଦ୍ୱାଦଶେଽପିବା କନ୍ୟା ପରିଣେୟାଃ ଶସ୍ତ୍ରଇତି ବାତ୍ସ୍ୟାୟନ ସଂମତଂ । ଅନ୍ୟମାନେସୁଦ୍ଧା ବାତ୍ସ୍ୟାୟନଙ୍କର ଏହି ମନୋଗତ ଅଭିପ୍ରାୟ ଆବିଷ୍କାର କରିଅଛନ୍ତି । ଅତଏବ ଅମ୍ଭେ ଯେଉଁ ମୈଥୁନର ଶାସ୍ତ୍ରୀୟତା ବ୍ୟକ୍ତକରିଅଛୁଁ ସେହି ମୈଥୁନ ବର୍ଜ୍ଜନମାତ୍ର ବ୍ରହ୍ମଚର୍ଯ୍ୟର ସୁପ୍ରସିଦ୍ଧଲକ୍ଷ୍ୟ- ।

ଉପରୋକ୍ତ ଶାସ୍ତ୍ରରୁ ସ୍ପଷ୍ଟଜଣାଯାଏଯେ ବାଳିକାବିବାହ କୁତ୍ରାପିଖେଳନୁହେ ଆଉ ମୈଥୁନପଦରଅର୍ଥ ପାଶବିକ ମୈଥୁନନୁହେ, ଶାସ୍ତ୍ରୋକ୍ତ ମୈଥୁନାଭାବରୁ ବାଳିକାବିବାହ କଥିତହୋଇଥିବାସ୍ଥଳେ ଯେଉଁ ବ୍ରହ୍ମଚରଣୀୟବିଧି କତେଶ ସଣଥିବୁ, ତାହାସୁଦ୍ଧା ଅଯଥାର୍ଥ ନୁହେ । ଏବଂ ଅଳ୍ପବୟସ୍କ ବାଳିକାପକ୍ଷରେ ବ୍ରହ୍ମଚର୍ଯ୍ୟବିଧାନ ଆଉ ଅସମ୍ଭବନୁହେ । ଯେଉଁମାନେ ଅସମ୍ଭବ ମନେକରନ୍ତି ସେମାନଙ୍କମତରେ ଅଳ୍ପବୟସ୍କ ପୁରୁଷର ସୁଦ୍ଧା ବ୍ରହ୍ମଚର୍ଯ୍ୟ ଧର୍ମବିଧର ହେବନାହିଁ । ଗର୍ଭାଷ୍ଟମ ବର୍ଷରେ ବ୍ରାହ୍ମଣର ଉପନୟନକର୍ତ୍ତବ୍ୟ । ପରେ ବ୍ରହ୍ମଚର୍ଯ୍ୟସୁଦ୍ଧା କର୍ତ୍ତବ୍ୟ ଇତ୍ୟାଦି ମନୁବଚନ-ର ସେମାନେ ଆଉ କଅର୍ଥଦେଖାଇ ସମାଧାନକରିବେ ପାଠକେ ଥରେ ବିଚାର କରନ୍ତୁ ।

୪ ଅମୃତ ଶିରୋମଣି ପଣ୍ଡିତେ ଲେଖିଅଛନ୍ତି — " ଧର୍ମଶାସ୍ତ୍ରକାରଙ୍କର ପରବର୍ତ୍ତି ଅଂଶଦେଖିଲେ ବାଳିକାବିବାହ ତାଙ୍କର ଅଭିମତ ଥିଲାପରି ଜଣାଯାଏନାହିଁ । — ଚତୁର୍ଥଦିବସରେ ପ୍ରାୟଶ୍ଚିତ୍ତ ହୋମପରେ ଅଗ୍ନିସମୀପରେ ଉଦକପାତ୍ର ରଖି ପ୍ରଦକ୍ଷିଣ କରି ନିଜସ୍ତ୍ରୀକୁ ପୂର୍ବମସ୍ତକରେ ଶୁଆଇ ମନ୍ତ୍ରପଢ଼ି ତାରଯୋନିସ୍ପର୍ଶକରିବ" ଇତ୍ୟାଦି । ଏଥିପୂର୍ବେ ଏପ୍ରଶ୍ନର ଉତ୍ତରକରାଯାଇଥିବାରୁ ଏଠାରେ ଫେରେ ଯେସବୁ ଲେଖିବା ଅନାବଶ୍ୟକମନେକରେ ।

୫ " ଅକ୍ଷତଯୋନିହିଁ ଅତ୍ୟନ୍ତ ସ୍ୱୀକୃତାଭବତି, ଅକ୍ଷତଯୋନ୍ୟାଃ ପର୍ଯ୍ୟନ୍ତର-ଣୋତ୍ତରକାଳଂ ପୁନଃସଂସ୍କୃତ୍ୟ ପରିଣେତବ୍ୟା ଇତିସ୍ମରଣାତ୍ " ମାତୃଦତ୍ତଙ୍କର ଏହି ବ୍ୟାଖ୍ୟାନାଂଶ ଉଦ୍ଧାରକରି ପଣ୍ଡିତେ ଲେଖିଅଛନ୍ତିଯେ, ' ତାହାରଅର୍ଥ ,, ଗୃହ୍ୟ-

ଭାଉଙ୍କମତରେ ଯୁବତୀ ବିବାହ ଉଲ୍ଲିଖିତ ।

ତାଙ୍କର ଏହିଲେଖାଦେଖିଲେ କିଏ ହାସ୍ୟ ସମ୍ବରଣକରିପାରିବ? ତଥାପି ଅସ୍ମତ୍ପଣ୍ଡିତଙ୍କର ଉକ୍ତିଦେଖି ଅସ୍ମେ ଉପହାସକରିବାକୁ ନିତାନ୍ତଲଜ୍ଜା ବୋଧକରୁ । କାରଣ ଉକ୍ତ ବ୍ୟାଖ୍ୟାନାଂଶର ଅର୍ଥ — କନ୍ୟା ଅର୍ଥାତ୍ ବାଳିକା ପ୍ରଦାନକର୍ତ୍ତାଙ୍କ ଦ୍ୱାରା ବରର ସ୍ୱୀକୃତାହୁଏ ସତ୍ୟ । କିନ୍ତୁ କାଳେ ଉକ୍ତକନ୍ୟାର ଅକ୍ଷତଯୋନିଅବସ୍ଥାରେ ଯଦିସେହି ବରର ମରଣଘଟେ, ତାହେଲେ କନ୍ୟାକୁ ପୁନଃସଂସ୍କାର କରିଦେଲେ ଅନ୍ୟବରକୁ ପ୍ରଦାନକରିବାକୁହେବବୋଲି କେତେକଣ ଋଷିଙ୍କର ମତ ସ୍ମୃତି ଶାସ୍ତ୍ରରେଦେଖାଯାଉଥିବାରୁ ମାତୃଦତ୍ତଙ୍କମତରେ ସେହିକନ୍ୟା ଅତ୍ୟନ୍ତ ସ୍ୱୀକୃତାନୁହେଁ । ସୁତରାଂ ବର ବିବାହପରେ ନିଜସ୍ତ୍ରୀକୁ କ୍ଷତଯୋନିକରିବା ଅତ୍ୟନ୍ତ ଆବଶ୍ୟକ, ତାହାହେଲେ ଉକ୍ତକନ୍ୟା ଅତ୍ୟନ୍ତ ସ୍ୱୀକୃତାହେବ । ଯେହେତୁ ତାର ଅନ୍ୟ ଗତ୍ୟନ୍ତର ନଥିବ । ଅତଏବ ମନୁ ଲେଖିଛନ୍ତି — ପାଣିଗ୍ରାହସ୍ୟ ସାଧ୍ୱୀସ୍ତ୍ରୀ ଜୀବତୋ ବା, ମୃତସ୍ୟ ବା । ପତିଲୋକ ମଭୀପ୍ସନ୍ତୀନାଚରେତ୍ କିଂଚିଦପ୍ରିୟଂ "ଅର୍ଥ — ଯେ ପାଣିଗ୍ରହଣ ସଂସ୍କାର ମାତ୍ରରେ ବରବୋଲି ନିର୍ଦ୍ଦିଷ୍ଟ, ସେହିପୁରୁଷ ଜୀବନରେ ଥାଉ ବା ନଥାଉ, ସାଧ୍ୱୀସ୍ତ୍ରୀ କଦାପି ସେହି ବରର ଅପ୍ରିୟ ଆଚରଣକରିବାକୁ ଇଚ୍ଛାକରିବନାହିଁ ଅଥଚ ପ୍ରଦତ୍ତ କନ୍ୟାର ପୁନର୍ଦ୍ଦାନସମ୍ବନ୍ଧେ ମନୁ ନିଜର ଅନିଚ୍ଛା ପ୍ରକାଶକରି ଲେଖିଛନ୍ତି — " ସକୃଦଂଶୋ ନିପତତି ସକୃତ୍ କନ୍ୟା ପ୍ରଦୀୟତେ । ସକୃଦାହ ଦଦାନୀତି ତ୍ରୀଣ୍ୟେତାନି ସକୃତ୍ସକୃତ "

ଉକ୍ତ ପଣ୍ଡିତମହୋଦୟ ଲେଖିଅଛନ୍ତି " ସୁତରାଂ ସୂତ୍ରସ୍ୟ ସୂତ୍ରକାର ଓ ବ୍ୟାଖ୍ୟା ତାଙ୍କମତରେ ଯୁବତୀବିବାହ ପ୍ରଶଂସିତ ଓ ଆଦୃତ, ବାଳିକା ବିବାହ ଅନୁମୋଦିତନୁହେଁ । ବିଦ୍ୟାଭୂଷଣଙ୍କର ଏହାଯୋକ୍ତି କେଉଁଶ୍ରେଣୀର ପାଠକମାନେ ସ୍ଥିର କରନ୍ତୁ " ଅସ୍ମେମଧ୍ୟ ପାଠକଙ୍କଉପରେ ବର୍ତ୍ତମାନ ସେହି ସ୍ଥିରକରିବା ଭାର ନ୍ୟସ୍ତକରୁଅଛୁଁ ।

ପାଠକେ! ଶିରୋମଣିପଣ୍ଡିତେ ନିଜେ ପାଠୀବ୍ରାହ୍ମଣ । ଅର୍ଥାତ୍ ଆଜ କାଲି ପାଟିବ୍ରାହ୍ମଣବୋଲି ଯେଉଁ ସମାଜ ପରିଚୟ ଦିଅନ୍ତି ସେହିଶ୍ରେଣୀର ବ୍ରାହ୍ମଣ । ତାଙ୍କର ଜ୍ଞାତି ଗୋଷ୍ଠି ପରିବାର ବନ୍ଧୁବାନ୍ଧବ ସମସ୍ତେ ନିଜେନିଜେ ପାଠୀସଞ୍ଜ୍ଞାବ୍ୟବହାରକରନ୍ତି । ସେ ମାତ୍ର ନିଜର ସାତପୁରୁଷରେ ନଥିବାର ତ୍ରିପାଠୀସଞ୍ଜ୍ଞା ବ୍ୟବହାରକରୁଅଛନ୍ତି । ବୋଧହୁଏ ସଂସ୍କାର ପ୍ରୟାସୀ ହେବାହେତୁରୁ ପଣ୍ଡିତେ ନିଜସଞ୍ଜ୍ଞା ତ୍ୟାଗପୂର୍ବକ ଅନ୍ୟରସଞ୍ଜ୍ଞା ବ୍ୟବହାରକରି ନିଜକୁ ତ୍ରିପାଠୀ ସଞ୍ଜ୍ଞକବୋଲି ପରିଚୟ

ହୁଅନ୍ତି । ପାଠକେ! କେଉଁ ଧର୍ମ ଶାସ୍ତ୍ରର ଅଲୌକିକ ପାଣ୍ଡିତ୍ୟବଳରୁ ପଣ୍ଡିତଙ୍କର ଜନ୍ମସିଦ୍ଧ ପାଠୀପଦ ବ୍ୟବହାରରେ ଲଜ୍ଜା କିମ୍ବା ବିପାଠୀପଦ ବ୍ୟବହାରରେ ଏତେ ଶ୍ଳାଘା ଜାତହେବା ଥରେ ପଶ୍ଚାରନ୍ତୁ କଉତ୍ତର ଦେବେ । ମୁଁ ଜାଣେ ଲୋକ ପଣ୍ଡିତ ହେଲେ ପାଣ୍ଡିତ୍ୟବଳରେ ନିଜକୁଳର ଉନ୍ନତିକରନ୍ତି । ଦେଖନ୍ତୁ ଯେ ଶିରୋମଣି ପଣ୍ଡିତେ ନିଜକୁଳ ପରମ୍ପରାଗତ ସଂଜ୍ଞା ବ୍ୟବହାରରେ ପରାଙ୍ମୁଖ । ଏହା କେଉଁ ପ୍ରକାର କଥା କେଜାଣି, " ଭବିଜାନନ୍ତି ତଦ୍ବିଦଃ " ।

ଯେଉଁମାନେ ବୈଦିକ ଲିଙ୍ଗ ( ଯହିଁରୁ କାର୍ଯ୍ୟର ସୂଚନାମାତ୍ର ମିଳେ ସେଲିଙ୍ଗ] ନେଇଁ ନିଜର ଅଭିଳାଷ ସିଦ୍ଧକରିବାକୁ ଇଚ୍ଛାକରନ୍ତି, ସେମାନଙ୍କର କାର୍ଯ୍ୟ କଦାପି ଠିକ୍‌ନୁହେଁ । କାରଣ ଯେଉଁଠାରେ ବେଦନା [ ଅର୍ଥାତ୍ ବଧି ) ଦେଖାଯାଏ— ନାହିଁ, ସେସ୍ଥଳରେମାତ୍ର ଲିଙ୍ଗ ଅନ୍ୱେଷଣ କରି କର୍ତ୍ତବ୍ୟବୋଲି ଶାସ୍ତ୍ରକାରମା— ନଙ୍କମତ । ରଜୋଦର୍ଶନ ପୂର୍ବରୁ ଶତଶତ ବାଳିକା ବିବାହ ରୂପ ବେଦନା ( ଯହିଁରେ କାର୍ଯ୍ୟ ସ୍ପଷ୍ଟରୂପେ ଜଣାପଡୁଥିବ ତାହାନାମ ବେଦନା ] ଆମ୍ଭେ- ମାନେ ଭାରତୀୟ ବ୍ରାହ୍ମଣଜାତି ମଧ୍ୟରେ ଦେଖିବାକୁପାଉଁ । ଏବଂ ଉପରୋକ୍ତ ବେଦନାବଳରେ ସ୍ୱାମୀମାନଙ୍କପକ୍ଷରେ ଅପ୍ରମାଦକର୍ମ ବୟସ ମାତ୍ର ବିବାହକାଳରୂପେ ଅପରୋକ୍ଷଭାବେ ବ୍ୟବସ୍ଥାପିତ ହେଉଥିବାନିମନ୍ତେ ନିର୍ବିବାଦ ଦେଖାଯାଏ । ଅତ ପ୍ରତ୍ୟକ୍ଷ ବେଦନାଦ୍ୱାରା ପ୍ରତିପାଦିତ କାର୍ଯ୍ୟସିଦ୍ଧିଲାଗି ଜଗତରେ କେହିହେଲେ ପ୍ରାଚୀନ ଲିଙ୍ଗନେଇଁ ଅର୍ଥାନ୍ତର ଅନୁମାନକରିବାପାଇଁ ପ୍ରୟାସକରେନାହିଁ । ଏଠାରେ ଗୋଟିଏ କ୍ଷୁଦ୍ରଉଦାହରଣଦେବା ଆବଶ୍ୟକମନେକରେ, ଗୋଟିଏଲୋକଦେଖିଲାଯେ ମାର୍ଗରେ ବଡଜନ୍ତୁଟିଏ ଯାଉଛି, ତାର ଶୁଣ୍ଢ଼ାଅଛି, ବଡବଡ ଦାନ୍ତ ଦୁଇଟିଅଛି । କାନ ଯୋଡିକ କୁଲାପରି । ଏପରିଜନ୍ତୁ ଏଥିପୂର୍ବରୁ ବହୁତଥର ସେ ଦେଖିଥିଲା ସୁତରାଂ ଜନ୍ତୁଟିକୁ ଦେଖିଲାମାତ୍ରେ ହସ୍ତୀବୋଲି ସ୍ଥିରକଲା, ଦେଖିଲା ସେହିହସ୍ତୀର ପଛରେ ଗୋଟିଏ ସୈନିକବେଶଧାରୀ ପୁରୁଷ ଆସୁଅଛି ତାକୁଦେଖି ଭାବିଲା ଏପରି ବେଶଧାରୀ ପୁରୁଷମାନେ ଅଶ୍ୱାରୋହଣକରି ଯୁଦ୍ଧଯାତ୍ରାକରନ୍ତି । ସୁତରାଂ ଏହିପୁରୁ- ଷ ଅଶ୍ୱାରୋହୀ, ତେବେ ଅଗରେଯିବାଜନ୍ତୁଟି ହାତୀନୁହେଁ କିନ୍ତୁ ଅଶ୍ୱ । ଯଦି ସେହିଜନ୍ତୁ- ଟି ଅଶ୍ୱନୁହନ୍ତା, ତାହାହେଲେ କାହିଁକି ଏ ଅଶ୍ୱାରୋହୀଗମନକରନ୍ତା । ଏପରି ଅନୁ- ମାନକରିବା କେବଳ ପ୍ରୟାସ ଭିନ୍ନ ଆଉ କିଛିନୁହେଁ । ସୁତରାଂ ଆମ୍ଭେକହୁଁ ବୈଦିକ କାର୍ଯ୍ୟ ପ୍ରତ୍ୟକ୍ଷାନୁଭୂତ ଏହିକାର୍ଯ୍ୟକୁ ଲିଙ୍ଗଦ୍ୱାରା ବିପରୀତକରି ଅନ୍ୟପ୍ରକାର ଅନୁମାନ କରିବା କୌଣସି ପ୍ରକାର ଶାସ୍ତ୍ରସଙ୍ଗତ ବା ଯୁକ୍ତିଯୁକ୍ତ ନୁହେଁ ।

ସ୍ମୃତି ଅପେକ୍ଷା ଶ୍ରୁତି ବଳବତ୍ତର । ସୁତରାଂ ବୈଦିକ ମନ୍ତ୍ର ପ୍ରମାଣରେ ହିଁ ସୁବିଜ୍ଞବିବାହ କର୍ତ୍ତବ୍ୟ ବୋଲି ଅମ୍ଭ ପଣ୍ଡିତଙ୍କର ମତ । ( ତାହାର ଉତ୍ତର ) ଅମ୍ଭେମାନେ ଯେଉଁ ପ୍ରମାଣରେ ହିଁ ସମସ୍ତ ବିଷୟ ସିଦ୍ଧାନ୍ତ କରୁଁ ସେ ପ୍ରମାଣର ଅର୍ଥ କଣ? ଉତ୍ତରରେ କହିପାରୁଁ ଯେ ବିପ୍ରମେୟ ବୁଝାଇବା ଉପଯୋଗୀ ଯେ ପ୍ରମାଣ ଏଥିରେ ସନ୍ଦେହ ନାହିଁ । ଶ୍ରୁତି ଲିଙ୍ଗ ବାକ୍ୟାଦି ଭେଦରେ ସେହି ପ୍ରମାଣ ଛଅ ପ୍ରକାର ଯଥା–" ଶ୍ରୁତି, ଲିଙ୍ଗ ବାକ୍ୟ ପ୍ରକରଣ ସ୍ଥାନ ସମାଖ୍ୟା ସମବାୟେ ପାରଦୌର୍ବଲ୍ୟମର୍ଥ ବିପ୍ରକର୍ଷାତ୍ " ( ଜୈମିନି ୩ । ୩ । ୧୪ ) ଏହି ଛଅଟି କାରଣ ମଧ୍ୟରୁ ସନ୍ନିକୃଷ୍ଟ ଅପେକ୍ଷା ବିପ୍ରକୃଷ୍ଟଗୁଡ଼ିକ ଉତ୍ତରୋତ୍ତର ଦୁର୍ବଳ ହୁଅନ୍ତି । ବିପ୍ରକୃଷ୍ଟସ୍ଥଳେ ଶ୍ରୁତି ଗ୍ରାହ୍ୟ ହୁଏ ନାହିଁ, କିମ୍ବା ସନ୍ନିକୃଷ୍ଟସ୍ଥଳେ ସ୍ମାର୍ତ୍ତ ଶ୍ରୁତି ଅଗ୍ରାହ୍ୟ ହୁଏ ନାହିଁ । ଏହି ଜଟିଳ ମୀମାଂସା ଶାସ୍ତ୍ରର ବ୍ୟାଖ୍ୟାନ ବିଷୟ ପ୍ରଦର୍ଶନ କରି ପ୍ରବନ୍ଧ ବୃଦ୍ଧି କରିବା ଲକ୍ଷ୍ୟ ନୁହେଁ । ପୁନଶ୍ଚ ନିମ୍ନରେ କେତୋଟି ଉଦାହରଣ ଦେଖାଇ ସ୍ୱମତ ସମର୍ଥନରେ ତତ୍ପର ହେଉଅଛୁଁ ।

୧ ଉଦାହରଣ – ସମାବେଶନସ୍ଥଳେ, ଅନେ୍ୟାର୍ବୈ ନାମଭ୍ରମନ୍ତ୍ରଂ ସ୍ମୃତ " ( ଆପସ୍ତମ୍ବ ଗୃହ୍ୟସୂତ୍ର ) ଏହା ଗୋଟିଏ ସ୍ମାର୍ତ୍ତ ଶ୍ରୁତି । ଏସ୍ଥଳେ ଭାଷ୍ୟରେ ସୁଦ୍ଧା ସୁଦର୍ଶନାଚାର୍ଯ୍ୟ ଲେଖିଅଛନ୍ତି – " ଅହଂ ଗର୍ଭମାଦଧାମି ଇତ୍ୟାଦି ଲିଙ୍ଗର ବିରୁଦ୍ଧ ହେଲେ ହେଁ ଉକ୍ତ ସ୍ମାର୍ତ୍ତ ଶ୍ରୁତି ବଳବତ୍ତର ହେବାରୁ ଗ୍ରାହ୍ୟ ।

୨ ଉଦାହରଣ – ପ୍ରୟୋଗପଦ୍ଧତିରେ – " ଅରୋହୋରୁ ମିତ୍ୟକୁ ବା କମନେ୍ୟା ବା ଜପନ୍ନେବା ଉମନ୍ତ୍ରଯେତ୍ " ପୂର୍ବୋକ୍ତ ଲିଙ୍ଗର ସହ ଏହାର ବିରୋଧ ଦେଖାଯାଉଥିଲେ ସୁଦ୍ଧା ଲିଙ୍ଗ ଅପେକ୍ଷା ଏ ବଳବତ୍ ବୋଲି ଭାଷ୍ୟରେ ପ୍ରୟୋଗପଦ୍ଧତିକାର ଲେଖିଅଛନ୍ତି । ହରଦତ୍ତ ଓ କପର୍ଦ୍ଦୀ ପ୍ରଭୃତି ଭାଷ୍ୟକାରମାନେ ସୁଦ୍ଧା ଉପରୋକ୍ତ ସ୍ମାର୍ତ୍ତ ଶ୍ରୁତି ବୈଦିକ ଲିଙ୍ଗଠାରୁ ବଳବତ୍ତର ବୋଲି ନିଜେ ଭାଷ୍ୟରେ ଉପରୋକ୍ତ ମନ୍ତ୍ର ବ୍ୟାଖ୍ୟାନସ୍ଥଳେ ଲେଖିଯାଇଅଛନ୍ତି ।

୩ ୟ ଉଦାହରଣ – ବୈଦିକ ଲିଙ୍ଗ ଦେଖାଯାଏ ବାରୁଣିମନ୍ତ୍ରରେ ବରୁଣଙ୍କ ସ୍ତୁତିକରିବାକୁ ହେବ । କିନ୍ତୁ " ବାରୁଣୀଭିରଥାଦିତ୍ୟ ମୁପସ୍ଥାୟ ପ୍ରଦକ୍ଷିଣଂ । କୁର୍ବନ୍ ଦିଶୋ ନମସ୍କୁର୍ଯ୍ୟାଦ୍ଦିଗୀଶାଂଶ୍ଚ ପୃଥକ୍ ପୃଥକ୍ । ଇତି " ଏହି ସ୍ମାର୍ତ୍ତ ଶ୍ରୁତି ପ୍ରାବଲ୍ୟରୁ ଇମଂମେ ଇତ୍ୟାଦି ବାରୁଣ ମନ୍ତ୍ରରେ ସୂର୍ଯ୍ୟଙ୍କ ସ୍ତୁତିକରିବାକୁ ହୁଏ । ଏଠାରେ ଲିଙ୍ଗ ଦୁର୍ବଳ ଦେଖାଯାଏ ବୋଲି ସର୍ବଜ୍ଞ ଶିରୋମଣି ମାଧବାଚାର୍ଯ୍ୟଙ୍କ ଭାଷ୍ୟରେ ଦେଖାଯାଏ ।

୪ ଉଦାହରଣ – ଉଦ୍ବୁଧ୍ୟସ୍ୱାଗ୍ନେ ଇତ୍ୟାଦି ଅଗ୍ନେୟମନ୍ତ୍ରରେ ସୁଦ୍ଧା ସ୍ମାର୍ତ୍ତ ଶ୍ରୁତିବଳରୁ

ଗୃହଦେବତାର ପୂଜାକରାଯାଏ । ୨ ଶଙ୍ଖୋଦେବୀଆଦି ଛାଗୀପୂର୍ବସନ୍ଧ୍ୟରେ ପୁଷ୍ପା ସ୍ୱାର୍ଦ୍ଧ ଶ୍ରଦ୍ଧାବଳିରୁ ଗନ୍ଧେଶ୍ବର ଗ୍ରହରପୂଜାବିଧିକରାଯାଏ । ୩ ବର୍ଷୋପି ସମାନାନାମି ସ୍ୱାଦ ମନ୍ତ୍ରରେ ବରଅର୍ଚ୍ଚନରେ ଉପବିଷ୍ଟହୁଏ । ଇତ୍ୟାଦି ଇତ୍ୟାଦି । ଏଥିରୁ ଅମ୍ଭେ-ମାନେ ସ୍ପଷ୍ଟବୁଝିପାରୁଅଛୁଁ ଯେ ମୀମାଂସା ସୂତ୍ରାନୁସାରେ ମନ୍ତ୍ରଭାଗଅପେକ୍ଷା ସ୍ମୃତି ଶ୍ରୁତି ବଳବତ୍ତର । ମୋଟା ମୋଟିରେ ଏଠାରେ ଏତିକ କୁହାଯାଇପାରେ, ମିଶ୍ରୁ ସମ୍ମାଦୃତ ବ୍ୟବହାରର ପ୍ରତ୍ୟକ୍ଷାନୁଭବ ପ୍ରମାଣ ସମକ୍ଷରେ ଶାସ୍ତ୍ର କଦାପି ସ୍ଥାନପାଇ ନପାରେ, ସୁତରାଂ ମହାଚାର୍ଯ୍ୟ ଶଙ୍କରଙ୍କର ଉକ୍ତିଅଛିଯେ — " ଯଦ୍ୟପିସିଦ୍ଧଂଲୋକ-ବିରୁଦ୍ଧଂ ନାଦରଣୀୟଂ ନାଚରଣୀୟଂ ,, କୌଣସି ବିଷୟ ଯଦ୍ୟପି ଶାସ୍ତ୍ରାନୁସାରେ କର୍ତ୍ତବ୍ୟବୋଲି ସିଦ୍ଧିଲାଭ କରିଅଛି, ତଥାପି ସେ ଶିଷ୍ଟବ୍ୟବହାରର ଯଦି ବିରୁଦ୍ଧ ହୁଏ ତେବେ ସେହି ବିଷୟ ଲୋକରେ ଆଦରଯୋଗ୍ୟ ନୁହେଁ, କିମ୍ବା ଆଚରଣର ଯୋଗ୍ୟ ନୁହେଁ । ଏଥିରୁ ଅମ୍ଭେମାନେ ସ୍ପଷ୍ଟ ବୁଝିବାକୁ ହେବଯେ ଯେ କୌଣସି ବିଷୟ ସିଦ୍ଧାନ୍ତ କରିବାକୁ ଗଲାପୂର୍ବରୁ ସେ ବିଷୟ ଲୋକବ୍ୟବହାରରେ ଚଳୁଅଛି କି ନା ଠିକ ଜାଣିବା ନିତାନ୍ତ ଦରକାର ।

ଏଠାରେ ଏହିପ୍ରଶ୍ନ କରାଯାଇପାରେ କି ? " ଯେଉଁ ଯୁବତୀବିବାହ ବୈଦିକଯୁଗରେ ଲୋକବ୍ୟବହୃତ ଥିଲା । ତାହା ଆଜି ସ୍ମୃତିରେ ନାହିଁ କୌଣସି ବିଶେଷ କାରଣ ନେଇଁ ପରିବର୍ତ୍ତିତହୋଇଯାଇଅଛି ସୁତରାଂ ଯୁବତୀବିବା-ହକର୍ତ୍ତବ୍ୟ । ଏଥିରେ ଆଶଙ୍କାର ସନ୍ଦେହ ନାହିଁ " ତାହାର ଉତ୍ତର — ସେହିବିଷ-ୟଟି ସମ୍ପୂର୍ଣ୍ଣଭାବେ ସନ୍ଦେହାସ୍ପଦ, ଯୁବତୀ ବିବାହ ବୈଦିକଯୁଗରେ ଚଳୁଥିଲା କି ନା ତାହା ସ୍ଥିରକରିବାକୁ ବର୍ତ୍ତମାନ କୌଣସି ଉପାୟ ନାହିଁ, କୌଣସି ବୈଦିକମନ୍ତ୍ରରେ ଋତୁମତୀର ବିବାହକର୍ତ୍ତବ୍ୟବୋଲି ସ୍ପଷ୍ଟଭାବେ ଉକ୍ତହୋଇନାହିଁ । ଅବହମାନ କା-ଳରୁ ଦେଖିନେଲେ ଗୃହ୍ୟସୂତ୍ର ବା ସ୍ମୃତି ନିବନ୍ଧନ ବ୍ୟବସ୍ଥାବିଧି ଓ ବ୍ୟବହାରାଦି-ରେ ବ୍ରାହ୍ମଣପକ୍ଷେ ଋତୁମତୀ ବିବାହର ସନ୍ଧାନ ଉପଲବ୍ଧହୁଏନାହିଁ । ଯଦି ବୋଲନ୍ତି ବାଲ୍ୟବିବାହ କର୍ତ୍ତବ୍ୟବୋଲି କେଉଁଠାରେ ଲେଖାଅଛି ? ବୈବାହିକ ବୈଦିକ ମନ୍ତ୍ରରେ ବାଳିକାବିବାହର ସନ୍ଦେହ ହେଉନଥିଲେ ସୁଦ୍ଧା ଗୃହ୍ୟସୂତ୍ର ସ୍ମୃତି ନିବନ୍ଧନ ବ୍ୟବସ୍ଥା ଓ ଶିଷ୍ଟାଚାର ପରମ୍ପରା ବାଲ୍ୟବିବାହ ସମ୍ବନ୍ଧେ ଜ୍ୱଳନ୍ତ ପ୍ରମାଣ ଦେଖାଉଅଛନ୍ତି ।

ଆପଣମାନେ କହୁଥାଉଛନ୍ତି କେବଳ ବେଦମାତ୍ର ପ୍ରମାଣ ଅନ୍ୟସବୁ ଅପ୍ରମାଣ ତାହାହେଲେ ହିନ୍ଦୁର ହିନ୍ଦୁତ୍ୱପର୍ଯ୍ୟନ୍ତ ଲୁପ୍ତପାଇଯିବ । କାରଣ ହିନ୍ଦୁର ଧର୍ମ କର୍ମ ଆଚାର ଓ ବ୍ୟବହାରାଦି ସମସ୍ତକାର୍ଯ୍ୟାବଳୀର ପୂର୍ଣ୍ଣବିବରଣ ବା ବିଧି

ଯେପରି ଅନ୍ୟାନ୍ୟ ଶାସ୍ତ୍ରାଦିରେ ସୁସ୍ପଷ୍ଟ ଲେଖାଅଛି, ସେପରି ବେଦରେ ପାଇପାରିବା ଅସମ୍ଭବ । ବେଦରୁ ଅନେକାଂଶ ବିଲୁପ୍ତ ହୋଇଗଲାଣି । ଆଉ ସେଥିର ଅର୍ଥ ବୁଝିବା ବୁଝେଇବା ନିତାନ୍ତ କଠିନ ବୋଲି ପ୍ରାଚୀନ ମହର୍ଷିଙ୍କଠାରୁ ଆଧୁନିକ ଜଗତର ଶିଷ୍ଟପର୍ଯ୍ୟନ୍ତ ସମସ୍ତଙ୍କ ମୁଖରେ ବାରମ୍ବାର ଉଦ୍‌ଘୋଷିତ । ତତ୍‌ସଂଦର୍ଭରେ ଭକ୍ତ ଶିରୋମଣି ଜୀବ ଗୋସ୍ୱାମୀ କହିଅଛନ୍ତି "ଅତ୍ର ଚ ବେଦଶବ୍ଦସ୍ୟ ସଂପ୍ରତି ଦୁଷ୍ପାରତ୍ୱାତ୍ ଦୁରଧିଗମାର୍ଥତ୍ୱାଚ୍ଚ ତଦର୍ଥନିର୍ଣ୍ଣାୟକାନାଂ ମୁନୀନାମପି ପରସ୍ପରବିରୋଧାଦ୍‌ବାଦ" ସୁତରାଂ ମହାଭାରତରେ ସ୍ୱୟଂ ବ୍ୟାସ କହିଅଛନ୍ତି, "ବେଦାଃ ପ୍ରମାଣଂ .... .... .... ମହାଜନୋ ଯେନ ଗତଃ ସ ପନ୍ଥା" । ଏପରିସ୍ଥଳେ ବେଦର ଅର୍ଥ ଏତେ ସୁଲଭ ବୋଲି ଭାବନା କରି ଯେ ଯେଉଁମାନେ କମତ କରି ବିଭକ୍ତି ବଚନ ନେଇ ଅର୍ଥଟେ ପ୍ରକାଶ କରିଦେଲେ ପାଣ୍ଡିତ୍ୟ ପ୍ରକାଶ ପାଇଯିବ? ତାହା ଆକାଶ କୁସୁମ । ତତ୍‌ପରିବର୍ତ୍ତେ ଦୁର୍ନାମ କେବଳ ଜଗତରେ ବିଖ୍ୟାତ ହେବ । କାରଣ ପାଣିନି ବୈଦିକପ୍ରକ୍ରିୟାରେ 'ବ୍ୟତ୍ୟୟୋ ବହୁଳଂ' ସୂତ୍ରରେ କାଳାଦିର ବ୍ୟତ୍ୟୟ କରି ଶିଷ୍ଟାଚାରର ଅନୁକୂଳ ମହିମାରେ ବେଦର ଅର୍ଥ କରିବାକୁ ହେବ ବୋଲି ସୂଚନା ଦେଇଅଛନ୍ତି । ଏଠାରେ ଆଉ ଗୋଟିଏ ଈଣ ମାନନ୍ତୁ ଯାଚେ ଯେ " ବୈଦିକମନ୍ତ୍ରଗୁଡ଼ିକର ଉପଯୁକ୍ତଭାବେ ଅର୍ଥାନୁସାରେ ବିନିଯୋଗ ହେଉ ନାହିଁ । ଆଜକାଲି ଅବଶ୍ୟକୀୟ ମନ୍ତ୍ର କାଳପାଠ କରନ୍ତି, କାଳର ବ୍ୟବହାର୍ଯ୍ୟ ମନ୍ତ୍ର ଆଜ ପାଠ କରନ୍ତି । ଗୃହମଧ୍ୟରେ ବ୍ୟବହାର୍ଯ୍ୟମନ୍ତ୍ରକୁ ବାହାରରେ ପାଠ କରନ୍ତି ବା ବାହାରର ମନ୍ତ୍ର ଘରେ ପଢ଼ନ୍ତି ଏହା ହିଁ ହିନ୍ଦୁସମାଜର ଗୋଟିଏ କଳଙ୍କ " ଏହାର ଉତ୍ତରରେ ଆମ୍ଭେ କହିପାରୁଁ ଜଗତରେ କେବଳ ମାନବ କାହିଁକି ପଶୁ ପକ୍ଷୀ କୀଟ ପତଙ୍ଗ ପ୍ରଭୃତି ଜୀବମାତ୍ରର ଗତି ବିଧି ସ୍ୱ ସ୍ୱ ସାମାଜିକ ବ୍ୟବହାରରେ ଶରଣାଧିବାର ଦେଖାଯାଏ । ବ୍ୟବହାରସ୍ଥିତ କେହି ଉଚ୍ଛୃଙ୍ଖଳତାର ବଶବର୍ତ୍ତୀ ହୁଅନ୍ତି ନାହିଁ ।

ମନ୍ତ୍ରର ଅର୍ଥ ବୁଝିବା ଅତ୍ୟାବଶ୍ୟକ ନୁହେଁ । କାରଣ ମଣିମନ୍ତ୍ର ମହୌଷଧର ପ୍ରଭାବ ଅଚିନ୍ତ୍ୟ । ସେହି ମନ୍ତ୍ରପ୍ରଭାବ ନୀଚଗୁଣିଆ ବା ସାପୁଆଙ୍କଠାରୁ ସର୍ବସାଧାରଣ ବରାବ-ବାଖୀ ଦେଖିଥିବେ । ଅଧିକ କହିବା ନିଷ୍ପ୍ରୟୋଜନ । ବୈଦିକମନ୍ତ୍ର ଲକ୍ଷ୍ୟ ନେଇ ବହୁ ପ୍ରଣୟନ କରିଅଛନ୍ତି । ତଦନୁସାରେ ବ୍ୟବହାର କଲେ ଯଥେଷ୍ଟ ହେବ । ଏ ଯେଉଁ ବ୍ୟବହାର ଏହା ବ୍ୟକ୍ତିଗତ ବ୍ୟବହାର ନୁହେଁ । ଭଲ ଭାବେ ମନେ ରଖିବାକୁ ହେବ ଯେ ଏହି ବ୍ୟବହାର କେବଳ ଶିଷ୍ଟସମାଦୃତ ବ୍ୟବହାର ବା ସମାଜିକ ବ୍ୟବହାର । ଏହି ବ୍ୟବହାରକୁ ନେଇ ଶାସ୍ତ୍ର ରଚିତ ହୋଇଅଛି ସିନା, ଶାସ୍ତ୍ରାନୁଗତଭାବେ ବ୍ୟବହାର ଚଳେ ନାହିଁ । ତେବେ ଶାସ୍ତ୍ରର ନିଷ୍ପ୍ରୟୋଜନତା ଆଶଙ୍କା କରିବା କର୍ତ୍ତବ୍ୟ ନୁହେଁ, କାରଣ

ଉଚ୍ଛୃଙ୍ଖଳବ୍ୟକ୍ତିଙ୍କୁ ସଂଯତ କରିବାପାଇଁ ଶାସ୍ତ୍ରର ମହତ୍ୱରହିଅଛି । ତା ନହେଲେ ଅର୍ଥାତ୍ ପ୍ରାଚୀନଶାସ୍ତ୍ରାନୁସାରେ ବ୍ୟବହାର କରିବାକୁଗଲେ ନୂତନସୃଷ୍ଟି ସଙ୍ଗେ ବିଧାତା ନୂତନଭାବେ ଦରକାରହେବ । ନୂଆଁ ଶାସ୍ତ୍ରସିନା ଲେଖିଦେବେ । ନୂଆଁ ବିଧାତାକେ କେଉଁଠାରୁ ଆଣିବେ । ଯଦି କହନ୍ତି ଆମ୍ଭେମାନେ ବିଧାତାହେବା । ତାହା କଦାପି ହୋଇପାରିବନାହିଁ । ସେଥିପାଇଁ ବହୁତ ଉପକରଣ ଦରକାରପଡ଼ିବ । ବହୁତ ସାମଗ୍ରୀ ସଂଗ୍ରହକରିବାକୁ ପଡ଼ିବ । ଯାହାକି ଆମ୍ଭମାନଙ୍କ ପକ୍ଷରେ ଏକାନ୍ତଦୁର୍ଲଭ ।

…୦…

— ଅଣଯୂ —

ପାଠକ ସାଧାରଣ ଜାଣନ୍ତିଯେ, ପଣ୍ଡିତ ଗୋପବନ୍ଧୁ ବିଦ୍ୟାଭୂଷଣଙ୍କ "ବିବାହ ବୟସ ନିରୂପଣ" ପ୍ରବନ୍ଧ ଦୈନିକଅଶାରେ ପ୍ରକାଶିତ ହୋଇଥିଲା । ସେଥିର ସମାଲୋଚନାବିଷୟରେ କେହି୨ ଅଗ୍ରସରହେବା ଅସ୍ୱାଭାବିକ ଓ ଅସଙ୍ଗତନୁହେଁ । ଯାହା ସମ୍ପୂର୍ଣ୍ଣସ୍ୱାଭାବିକ ଓ ସୁସଂଗତ ତାହା ଅବସ୍ଥାଦୃଷ୍ଟିରେ ଆମ୍ଭଦେଶରେ ପ୍ରାୟ ଅସ୍ୱାଭାବିକ ବା ଅସଂଗତ ବିବେଚିତହୋଇଥାଏ । ଅଧିକ ଆଉ କଣ ପରିବିଷୟଏ– ହିଯେ କେହି କୌଣସିବିଷୟ ଆଲୋଚନା କରିବାକୁବସିଲେ ସେଥିରେ ଗୋଟାଏ କିଛି ଗୂଢ଼ ଅଭିସନ୍ଧିଖୋଜିବାର ପ୍ରବୃତ୍ତି ! ଦେଶରେ ଶିକ୍ଷିତସାଧାରଣଙ୍କ ମଧ୍ୟରେ ଅତ୍ୟନ୍ତପ୍ରବଳ । ସୁତରାଂ ସତ୍ୟନିର୍ଣ୍ଣୟ ବିରଳ । କେବଳ ନିଜରରୁଚି ଅନୁସାରେ ପକ୍ଷଗ୍ରହଣକରି ବିବାଦକରିବାପାଇଁ ଗୋଟାଏ ଅସ୍ୱାଭାବିକ ଆଗ୍ରହ ଅନେକଙ୍କ ଚିତ୍ତକୁ ଅଧିକାରକରେ ।

ଅବସ୍ଥାଭେଦରେ ସାମାଜିକ ରୀତିନୀତିର ବିଭିନ୍ନବ୍ୟବସ୍ଥା ଅନାବଶ୍ୟକବୋଲି କୁହାଯାଇନପାରେ । ଅଳ୍ପଦିନପୂର୍ବେ ଭାରତଗବର୍ଣ୍ଣମେଣ୍ଟଙ୍କ ଦୃଷ୍ଟିଆକର୍ଷଣ କରାଯାଇ ଏସମ୍ବଲି ସଭାରେ ଶାରଦାବିଲ୍ ଉପସ୍ଥାପିତ କରାଯାଇଥିଲା । ତହିଁରେ ଭାରତଗବର୍ଣ୍ଣମେଣ୍ଟ ଦେଶର ନେତୃସ୍ଥାନୀୟ ବ୍ୟକ୍ତିଙ୍କ ମତଲୋଡ଼ିଥିଲେ । ସେଥିମଧ୍ୟେ ନାନାସ୍ଥାନରେ ସଭାକରି ଲୋକେ ବିବିଧମତପ୍ରକାଶକଲେ । ଦେଶରକେତେଜଣ ସମ୍ଭ୍ରାନ୍ତତନ୍ତ୍ରୀକର ସନାତନଧର୍ମରକ୍ଷା ଉଦ୍ଦେଶରେ ପୁଣ୍ୟଧାମ କାଶୀକ୍ଷେତ୍ରରେ ମହାସମିତି ଆହ୍ୱାନକଲେ । ସେହିସମିତିହେବାପୂର୍ବରୁ ଏକସପ୍ତାହବ୍ୟାପି ଯେଉଁ କଂଗ୍ରେସ୍‌ସଭାହୋଇଥିଲା, ତହିଁରେ ନିଜନିଜମତ ବ୍ୟକ୍ତକରିବାପାଇଁ ବିରୁଦ୍ଧବାଦିଙ୍କୁ

ମୁଦ୍ରା ସୁବିଧାଦିଆଯାଇଥିଲା । କିନ୍ତୁ ଏସ୍ଥଳରଲୋକେ ଉକ୍ତସଭାରେ ଉପସ୍ଥିତନ-
ହୋଇ ଦେଶୀୟପତ୍ରିକାମାନଙ୍କରେ ସେହିମହାସମିତିର ପ୍ରତିବାଦ ଆରମ୍ଭକଲେ ।
ଫଳତଃ ଉକ୍ତମହାସମିତିରେ ଉପସ୍ଥିତ ଶ୍ରୁତି ସ୍ମୃତି ବିଶାରଦ ପଣ୍ଡିତମଣ୍ଡଳୀ ସ୍ମୃତିଶାସ୍ତ୍ର
କର ଯୁବତୀବିବାହ ଖଣ୍ଡନ ଓ ବାଲ୍ୟବିବାହ ସୁସିଦ୍ଧାନ୍ତକଲେ । ତଥାପି ବିରୁଦ୍ଧବା-
ଦୀମାନେ ପାଣ୍ଡିତ୍ୟର ପରିଚୟଦେବାଥାଇଁ ପତ୍ରିକାଗୁଡ଼ିକରେ ଅଯଥାଭାବେ ଲେଖି-
ଲେ । ପ୍ରୋକ୍ତ ବିରୁଦ୍ଧବାଦୀଙ୍କମଧ୍ୟରୁ ମୋରପରିଚିତ ଶ୍ରୀଯୁତ ସାହିତ୍ୟଶିରୋମଣି
ଅନନ୍ତ ପାଠୀ ( ଅନନ୍ତତ୍ରିପାଠୀ ) ବିଦ୍ୟାଭୂଷଣ ମହାଶୟଙ୍କ ପ୍ରବନ୍ଧର ପ୍ରତିବା-
ଦକରିବାକୁ ଅଗ୍ରସରହୋଇ ଦୈନିକଆଶାରେ କେତେଗୋଟି ପ୍ରବନ୍ଧପ୍ରକାଶକଲେ ।
ଏପ୍ରକାଶର ଅବ୍ୟବହିତପରେ ବିଦ୍ୟାଭୂଷଣସୁଦ୍ଧା ସେଥିର ପ୍ରତିବାଦ ଆଶା ସମ୍ପାଦ-
କଙ୍କ ନିକଟକୁପଠାଇଲେ । ସେପ୍ରତିବାଦ ଉକ୍ତ ସମ୍ପାଦକଙ୍କ ହସ୍ତଗତହୋଇନା-
ହିଁକି ହସ୍ତଗତହେଲେହେଁ ପ୍ରକାଶକରାଯାଇନାହିଁ ମୁ ତାହା କହିନପାରେ ।
ତାହା ପ୍ରକାଶିତ ହୋଇଥିଲେ ପାଠକ ସାଧାରଣ ସେପ୍ରବନ୍ଧର ଉପାଦେୟତା
ବୁଝିଥାନ୍ତେ ।

ମୁ ଜାଣେ ଶିରୋମଣି ମହାଶୟ ସନାତନଧର୍ମ ବିରୋଧୀନୁହନ୍ତି । କେଜାଣି
ଏବେ ସେକାହିଁକି ସେ ଧର୍ମବିରୁଦ୍ଧରେ ଖଡ୍ଗହସ୍ତ । ସମୟପ୍ରଭାବରେ ବା ଅବସ୍ଥା-
ଗୁଣରେ ଦେଶରେ ନାନାପ୍ରକାର ଛଦ୍ମବେଶ ଦେଖାଯାଏ ; ସୁତରାଂ ଶିରୋମଣି
ଙ୍କର ଏପରି କେହିବନ୍ଧୁଥିବା ଅନୁମାନକରେ । ଯାହାଙ୍କପ୍ରବର୍ତ୍ତନାରୁ ଶିରୋମଣି-
ମହାଶୟ ମୂଳବିଷୟ ପ୍ରୋକ୍ତଗ୍ରନ୍ଥ ଆରମ୍ଭକଲେ । ମୁ ତାଙ୍କର ସମସ୍ତପ୍ରବନ୍ଧ ପାଠ
କରିଅଛି । ସେ ସ୍ମୃତିର ଅପ୍ରାମାଣିକତା ପ୍ରତିପାଦନକରିବାକୁଯାଇ ନିଜର ଜ୍ଞାନ
ଦୌର୍ବଲ୍ୟ ପ୍ରକାଶକରିଅଛନ୍ତି । କେତେକସ୍ଥଳରେ ଭାଷାର ପରିପାଟୀରେ କେ-
ତେକପ୍ରମାଦ ସୁଦ୍ଧା ଦେଖାଯାଏ । ନିମ୍ନରେ ସେଥିରୁ କେତେଗୋଟି ନିଦର୍ଶନ
ଦିଆଗଲା ।

୧୨ ତାରିଖପତ୍ରିକାରେ ‘ ଅନେକେତେକଗ୍ରନ୍ଥର ବ୍ୟଭିଚାରିଣୀ ପରବର୍ତ୍ତିରେ”
ଇତ୍ୟାଦିବାକ୍ୟରେ ଗ୍ରନ୍ଥରେସ୍ଥଳେ ଗ୍ରନ୍ଥରଲେଖିଅଛନ୍ତି । ୧୩ ତାରିଖ ପତ୍ରିକାରେ
“ ଏହି ବାକ୍ୟମାନଙ୍କ ଭୂମଧ୍ୟ ଯୁବତୀବିବାହହିଁ ସୂଚନାମେଳୁଅଛି” ଏବାକ୍ୟରେ
ମିଳୁଅଛିସ୍ଥଳେ ମେଳୁଅଛି ହୋଇଅଛି । ମେଳୁଅଛି ଅପଭାଷା । ହିଁ ନିରର୍ଥ-
କ । ୧୪ ତାରିଖ ପତ୍ରିକାରେ “ ସ୍ମୃତ୍ୟର୍ଥ ସମୟରେ ବାଳକା ବିବାହ ଅପ୍ରକାଶ

କୁସୁମପୁଲ୍ଲ " ଏବାକ୍ୟରେ ଆକାଶ କୁସୁମପ୍ରଦ କ୍ରିୟାସହ ସମ୍ବନ୍ଧଭଙ୍ଗଏକ ?
୬ । ୮ । ୨୯ ପତ୍ରିକାରେ " ଅନେକ ବ୍ରହ୍ମଚର୍ଯ୍ୟପଦରେ ଅଠପ୍ରକାର ବ୍ରହ୍ମଚର୍ଯ୍ୟ-
ମଧ୍ୟର ଦର୍ଶନ ସ୍ପର୍ଶନ ଇତ୍ୟାଦ ବ୍ରହ୍ମଚର୍ଯ୍ୟପଦରେ ଗୃହୀତହେବେନାହିଁ କହୁଅଛନ୍ତି"
ପାଠକେ ! ଏବାକ୍ୟର ଅର୍ଥ କଣ ବୁଝାଯାଏ ?

" କିନ୍ତୁ ସ୍ମୃତି ପ୍ରମାଣରୂପେ ସ୍ୱୀକାରକରାଯାଏନାହିଁ ", ଏବାକ୍ୟରେ ପଣ୍ଡିତେ ସ୍ମୃତିର ଅପ୍ରାମାଣ୍ୟ ପ୍ରକାଶକରି ଧର୍ମଶାସ୍ତ୍ର ବିବେଚନାରେ କାହିଁକି ପ୍ରବୃତ୍ତହେଲେ? କେଜାଣି ।

ଯାହାହେଉ ବିଦ୍ୟାଭୂଷଣ ମହାଶୟ ବୃଥାଗଣ୍ଡଗୋଳରେ ମାତି ନିଗେ-ମଣିଙ୍କସହ ବାଦ୍‌ବିସମ୍ବାଦ କରିବାଲାଗି ପ୍ରବନ୍ଧମାନଲେଖି 'ଆଶା' ସମ୍ପାଦକଙ୍କର ଅପ୍ରିୟଭାଜନ ହେଉଅଛନ୍ତି । ଅତଏବ ସରଳଭାବରେ ନିଜର କର୍ତ୍ତବ୍ୟପାଳନ-କରିବାକୁ ବିଦ୍ୟାଭୂଷଣ ମହାଶୟଙ୍କୁ ମୁ ଅନୁରୋଧକରେ । ଇତି,

୧୨-୩-୨୯ ପଣ୍ଡିତ ଶ୍ରୀବଳଭଦ୍ରନନ୍ଦଶର୍ମ୍ମା ।

---

ପ୍ରିୟ ବିଦ୍ୟାଭୂଷଣ ମହାଶୟ,

ଅଳ୍ପଦିନପୂର୍ବେ ଦୈନିକଆଶାରେ ପ୍ରକାଶିତ-ବାଲ୍ୟବିବାହ ନିରାକରଣପ୍ରବନ୍ଧ ପାଠକରି ତତ୍ପରେ ବର୍ତ୍ତମାନ ପ୍ରବର୍ତ୍ତନହୋଇଥିଲି । ଲେଖକମହାଶୟ ଆପଣଙ୍କର ବାଲ୍ୟବିବାହ ସମର୍ଥକପ୍ରବନ୍ଧକୁ ଖଣ୍ଡନକରିବାକୁ ଯାଇ ନିଜପ୍ରବନ୍ଧରେ ଅଲୌକିକ ଏବଂ ଅଶାସ୍ତ୍ରୀୟ ବହୁତ ସନ୍ଦର୍ଭଦ୍ୱାରା ପାଣ୍ଡିତ୍ୟଦେଖାଇ-ଅଛନ୍ତି ସତ୍ୟ କିନ୍ତୁ ତାହା ଶାସ୍ତ୍ରଯୁକ୍ତି ପ୍ରମାଣ ସିଦ୍ଧକୁହେଁ ଏଥୋଇ ଆପଣ ପୁନଃ ସେହି ବିତଣ୍ଡାଖଣ୍ଡନ ଉଦ୍ଦେଶ୍ୟରେ ଶାସ୍ତ୍ରୋଚିତ ମର୍ଯ୍ୟାଦା ଓ ମୁକ୍ତିଯୁକ୍ତ ଆଧୁନିକ ପ୍ରବନ୍ଧ ଏଠାଲେଖିଥିବାର ଜଣେନନ୍ଦଙ୍କଠାରୁ ଦେଖିଥିଲି, ଅପଣ ଦୈନିକଆଶାରେ ପ୍ରକାଶର ଆଶାକରୁଥିଲି, ଆଶାନାହିଁ ଏପରି ଏହିଷମୟରେ ସ୍ୱୀକାରକରିବ ପ୍ରବନ୍ଧ ଉଜ୍ଜ୍ୱଳ ପ୍ରକାଶକରୁନାହାନ୍ତି । ତାହାଶୁଣି ପରମପ୍ରୀତହୋଇ, ଧନ୍ୟବାଦ ପଣ୍ଡିତଙ୍କର ରହିଯାଉନାହିଁ । ଆପଣଙ୍କର ଏହିଶାସ୍ତ୍ରଯୁକ୍ତିସମ୍ପନ୍ନ ଏବଂ ସନାତନ ଧର୍ମଉନ୍ନାୟକ ପ୍ରବନ୍ଧଟି ଉଚ୍ଚରେ ଗ୍ରନ୍ଥଗ୍ରାହକ ଧର୍ମରକ୍ଷାକରନ୍ତୁ । ଏଥିରେ ସନ୍ଦେହନାହିଁ । ଇତି,

ଭଳକଳେଜ ପାରଳାଖେମୁଣ୍ଡି ଆପଣଙ୍କର

୫-୭-୧୯୨୯ ପଣ୍ଡିତ ନୀଳକଣ୍ଠମିଶ୍ରଶର୍ମ୍ମା ।

## ଅଭିପ୍ରାୟ ।

ବାଳିକାବିବାହ ଏବଂ ଯୁବତୀବିବାହ ସମ୍ବନ୍ଧରେ ବିଭିନ୍ନ ମହର୍ଷିଗଣ, ଭାରତ-ଧର୍ମଶାସ୍ତ୍ରମାନଙ୍କରେ ବିଭିନ୍ନମତ ପ୍ରଦର୍ଶନକରିଅଛନ୍ତି । ଅତଏବ କୌଣସିଟିକୁ ଦୋଷାବହବୋଲି ଅମ୍ଭେମାନେ କହିନପାରୁଁ । ବର୍ତ୍ତମାନ ଏହିବିଷୟନେଇ ସ୍ଥାନେ, ଗୋଳମାଳ ଚାଲିଅଛି । ଯାହାହେଉ ସ୍ୱଧର୍ମନିରାପୂର୍ଣ ବିଶାଳ ହିନ୍ଦୁସମାଜ ଏହି ବାଳିକାବିବାହ ତ୍ୟାଗକରି ଅନ୍ୟନିୟମ ଅବଲମ୍ବନ କରିବାକୁ କୁଣ୍ଠାବୋଧକଲା । ଅଧିକନ୍ତୁ ବିବିଧ ସମ୍ପ୍ରଦାୟ ନିଜନିଜର ଧର୍ମକ୍ଷୋଭ ଏବଂ କୁଳଗୌରବର ହ୍ରାସଦେଖି ପ୍ରଚଳିତ ନିୟମରକ୍ଷାଲାଗି ସମାଜର ନେତୃବର୍ଗଙ୍କୁ ପ୍ରାର୍ଥନାକଲେ । ଧର୍ମପ୍ରାଣ ନେତୃବୃନ୍ଦ, ସେହି ସନାତନଧର୍ମରକ୍ଷାକରିବାକୁ ବଦ୍ଧପରିକରହୋଇ ବିବିଧଉପଦେଶ-ରେ ସେମାନଙ୍କୁ ଶାନ୍ତିପ୍ରଦାନକଲେ । ଏବଂ ସୁଧୀଗଣ ସେହିଧର୍ମପନ୍ଥାର ପଥିକ-ହୋଇ ଗ୍ରନ୍ଥ ପୁସ୍ତକ ପୁସ୍ତିକା ଏବଂ ପତ୍ରିକାରେ ନ୍ୟାୟଧୋରଣୀରଦୁହାଇଦେଇ ବାଳିକାବିବାହର ହଠାତ ଅଟେ ଅନାବଶ୍ୟକ ବୃଢକେଟ ବାରେ ସଚେଷ୍ଟହେଲେ । ଏପରିଅବସ୍ଥାରେ ଏହିପାଠେମଧ୍ୟ ବାଳିକାବିବାହ ଏବଂ ଯୁବତୀବିବାହ ବିଷୟନେଇ ପଣ୍ଡିତମାନଙ୍କର ବାଦ ପ୍ରତିବାଦଚାଲିଲା । ଏହାସବୁ ମୁଁ " ଦୈନିକଆଶା " ରେ ପାଠକରୁଥାଏ । ମାତ୍ର କେଜାଣି କାହିଁକି ଅଉଦୁଇଦିନପରେ ବାଳିକାବିବାହସମ-ର୍ଥକ ପଣ୍ଡିତ ଶ୍ରୀ ଗୋପବନ୍ଧୁ ବିଦ୍ୟାଭୂଷଣଙ୍କର ଲେଖାପତ୍ରିକାରେ ଦେଖିବାକୁ ପାଇଲିନାହିଁ । ଅତଏବ ପଣ୍ଡିତେ କେତେଦିନଅପେକ୍ଷାକରି ଅନନ୍ୟୋପାୟରେ ବାଳିକାବିବାହବିଷୟକ ଖଣ୍ଡିଏ ପୁସ୍ତିକା ପ୍ରଣୟନକଲେ । ପଣ୍ଡିତ ମହାଶୟ, ପୁସ୍ତ-କ ପ୍ରକାଶପୂର୍ବରୁ ସ୍ୱଳ୍ପଆଶ୍ରୟଲିପି ମୋତେଦେଖାଇଥିଲେ । ସେଥିରେ ଶ୍ରୁତି ଏବଂ ସ୍ମୃତିରପ୍ରମାଣନେଇ ବାଳିକାବିବାହ ସମର୍ଥିତହୋଇଅଛି । ସୁତରାଂ ଶାସ୍ତ୍ର ସଙ୍ଗତ, ସମାଜପ୍ରଚଳିତ ଏହିପୁସ୍ତିକାର ଅବତରସଙ୍ଗେ ଲେଖକଙ୍କୁ ଅଭ୍ୟନ୍ତରୀଣ ଧନ୍ୟବାଦନଦେଇରହିପାରୁନାହିଁ । ଇତି,

ଶ୍ରୀ ଗୋବିନ୍ଦଦାଶଶର୍ମ୍ମା ବିଦ୍ୱାନ୍
ସଂସ୍କୃତ ଓଡ଼ିଆପ୍ରଧାନ ପଣ୍ଡିତ
ରାଜକୀୟ କଲେଜ ।

ପାରଳାଖେମୁଣ୍ଡି
୧୯-୭-୧୯

## ଅଭିମତ

---

ଶ୍ରୀଯୁତ ବିଦ୍ୟାଭୂଷଣଙ୍କର ବ୍ରାହ୍ମଣଜାତିପକ୍ଷେ ଯୁବତୀବିବାହ ଖଣ୍ଡନ ପ୍ରବନ୍ଧ ଆମୂଳାନ୍ତ ଶୁଣିଅଛୁ । ଏଥିରେ ଶ୍ରୀ ଅନନ୍ତ ତ୍ରିପାଠୀ ସାହିତ୍ୟଶିରୋମଣିଙ୍କର 'ଯୁବତୀ-ବିବାହ 'ର ଖଣ୍ଡନକରାଯାଇଅଛି । ଏହିଖଣ୍ଡନ ଶାସ୍ତ୍ରୀୟ କ୍ରମ ସମ୍ବଳିତହେବାରୁ ଆଶାକରେ ଉତ୍କଳୀୟ ବ୍ରାହ୍ମଣଙ୍କର ସବିଶେଷ ଉପକାରକହେବ ।

ମୁଁ ଭଲରୂପେ ଜାଣେଯେ ସାହିତ୍ୟଶିରୋମଣିଙ୍କ ' ଯୁବତୀ ବିବାହ ' ଶିଷ୍ଟାଚାର ବହିର୍ଭୂତ । ବିଶେଷତଃ ମୁକ୍ତିକ୍ଷେତ୍ର ଶ୍ରୀବିଶ୍ୱନାଥଙ୍କ ନିଦ୍ୟାମ ପରମପବିତ୍ର କାଶୀନଗରୀରେ ଏସମ୍ବନ୍ଧେ ଯେଉଁ ବିପୁଳସଭାବସିଥିଲା, ତହିଁରେ ବଶିଷ୍ଠାଦି ଗୌତମକଳ୍ପ ଅନଳ୍ପ ପଣ୍ଡିତଙ୍କମୁଖରେ ନିର୍ଲୋକେଶ ର ବିଶେଷତଙ୍କ ଯେଉଁ ଅମୋଘ ଅନ୍ଦେଶ ପ୍ରକଟିତହୋଇଥିଲା, ସେଥିରେ ବ୍ରାହ୍ମଣଜାତିପକ୍ଷେ ଯୁବତୀ ବିବାହ ଖଣ୍ଡନକରାଯାଇ ବାଳିକାବିବାହ ସ୍ୱୀକୃତହୋଇଥିଲା । ଏହା କାହାର ଅବିଦିତନୁହେଁ । ଦେଶରୁନାସ୍ତିକତା ଦୂରୀକରଣପକ୍ଷେ ସନାତନଧର୍ମରକ୍ଷାର ବିପୁଳଆୟୋଜନସୂଚୀ ବର୍ତ୍ତମାନ ସେଠାରେ ଚାଲିଅଛି । ଅତଏବ ଆମାକରେ ନାସ୍ତିକତାଦୂରୀକରଣାର୍ଥ ବିଦ୍ୟାଭୂଷଣଙ୍କ ଏହିପ୍ରବନ୍ଧସଦୃଶ ପ୍ରବନ୍ଧ ଭାରତରେ ଏବଂ ବର୍ତ୍ତମାନ ପ୍ରକଟିତହେବା ନିତାନ୍ତଦରକାର । ଇତି,

ପାରଳାଖେମୁଣ୍ଡି
୩-୭-୨୯

ଶ୍ରୀ ଆର୍ତ୍ତତ୍ରାଣ ମିଶ୍ରଶର୍ମା.
ହେଡ୍‌ପଣ୍ଡିତ ସଂସ୍କୃତକଲେଜ ।

ନିନ୍ଦନ୍ତୁ ନୀତିନିପୁଣାଃ ଯଦିବାସ୍ତୁବନ୍ତୁ,
ଲକ୍ଷ୍ମୀଃ ସମାବିଶତୁ ଗଚ୍ଛତୁବା ଯଥେଷ୍ଟଂ,
ଅଦ୍ୟୈବବା ମରଣମସ୍ତୁ ଯୁଗାନ୍ତରେବା,
ନ୍ୟାଯ୍ୟାତ୍‌ପଥଃ ପ୍ରବିଚଲନ୍ତି ପଦଂ ନଧୀରାଃ ।

